


## ଜୀବନ ସଙ୍ଗୀତ

**କବି - ସ୍ନେହମୟୀ ଦାଶ**
ମାର୍ଫତ୍ - ଶ୍ରୀ ରମେଶ ଚନ୍ଦ୍ର ଦାଶ
ପ୍ଲଟ୍ ନଂ - ୧୩୮୩/୨୬୪୧
ରାମଟାଙ୍ଗୀ, ଫେଜ୍ ୨, ଭୁବନେଶ୍ୱର
ଫୋନ୍ - ୯୪୮୩୩୧୯୮୦୩

ପ୍ରକାଶକ
ଦି ନିଉ ଲାଇଫ୍ ପବ୍ଲିକେଶନ୍
ଏଚ୍.ଆଇ.ଜି - ୧/୬୪, କପିଳପ୍ରସାଦ,
ଭୁବନେଶ୍ୱର, ଓଡ଼ିଶା
ଫୋନ୍ - ୯୩୩୭୧୨୯୫୫୨
ଅକ୍ଷୟ ତୃତୀୟା ୨୦୧୩
ପ୍ରଚ୍ଛଦ - ପପୁ
ମୂଲ୍ୟ - ଟ. ୫୦/- (ପଚାଶ ଟଙ୍କା ମାତ୍ର)

**JEEBANA SANGITA**
Written By **Smt. Snehamayee Dash**
Published by **The New Life Publication**
HIG - 1/64, Kapila Prasad
Bhubaneswar, Odisha
Phone - 9337129552
Cover Designed By **Papu**
Price : Rs. 50/-
(Rupees Fifty Only)



# ଉତ୍ସର୍ଗ

ଜୀବନର ଚଲାପଥରେ ଚାଲୁ ଚାଲୁ ଅନେକ ଥର ଝୁଣ୍ଟିପଡ଼ିଛି ।
ଯିଏ ମୋର ହାତ ଧରି, ଠିଆ କରି, ସଂସାରର ଖାଲ, ଢିପ,
ରାସ୍ତାରେ ଆଗକୁ ଆଗେଇ ନେଇଛନ୍ତି ତାଙ୍କରି ହାତରେ ମୋର
ଏ ସଂକଳନଟିକୁ ଉତ୍ସର୍ଗ କରୁଛି ।

**- ସ୍ନେହମୟୀ**



# କବିତା ସଂପର୍କରେ ପଦେ ଅଧେ...

ଜୀବନ ମାନେହିଁ କବିତା । ସେଇଜୀବନ କବିତାରେ ଯାହାର ସ୍ୱର, ଲୟ, ତାଳ ଏବଂ ଭାବ ସମ୍ମିଳିତ ହୁଏ ସେଠାରେ ସୃଷ୍ଟି ହୁଏ ଜୀବନ ସଙ୍ଗୀତ । କବି କେବେ ନାରୀ ନୁହେଁ କି ପୁରୁଷ ନୁହେଁ, କ୍ଲୀବଲିଙ୍ଗଟିଏ । ଯେ ନିଜର ହୃଦୟ କକ୍ଷରେ ସମାଜର ସୁଖ, ଦୁଃଖ, ଝଡ, ବର୍ଷା, ରୋଗ, ନୈରାଶ୍ୟ ଏବଂ ଯନ୍ତ୍ରଣା ବା ସ୍ୱପ୍ନମାନଙ୍କ ସହ ବଂଧୁତାକରି ଜୀବନଜିଏଁ ସେ କବି । କବି ସର୍ବଦା ଭାବୁକ । ନଶ୍ୱର ଦେହ ନେଇ ଇଶ୍ୱର ମନନେଇ ସେ ବିଚରଣ କରୁଥାଏ କଳ୍ପନା ରାଜ୍ୟରେ । ସେଇ କଳ୍ପନା ମଧ୍ୟରେ ସମାଜର ଘଟୁଥିବା ପ୍ରତିଟି ଘଟଣାକୁ ସେ ନିଜ ଭିତରେ ଅନୁଭବ କରେ ଏବଂ ଯେଉଁଗୁଡିକୁ ତା'ହୃଦୟ ଛୁଏଁ ତାକୁ ସବୁଦିନ ସାଇତି ରଖିବାକୁ ତାର ଲୁକ୍‌କାୟିତ ଆତ୍ମା ତା'କୁ ପ୍ରୋତ୍ସାହିତ କରେ ଏବଂ ସେ ତାକୁ ରୂପଦିଏ କଲମ କାଗଜରେ କବିତା ଆକାରରେ । କବି ଗୋଟିଏ ମାଆ, ଯେମିତି ଗର୍ଭବତି ମାଆ ସନ୍ତାନ ଜନ୍ମକୁ ଅତି ଉତ୍ସୁକତାର ସହ ସବୁ ଯନ୍ତ୍ରଣାକୁ ଅମୃତ ପରି ପାନକରି ଚାହିଁରହି ଥାଏ ସେମିତି କବି ସମାଜର ସବୁ କଟକଣା, ସଂସାରର ସବୁ ଜଂଜାଳ ଏବଂ ଜୀବନର ସବୁ ଉତ୍‌ଥାନ ପତନକୁ ସାଦରେ ସାଉଁଟି ଲେଖେ କବିତା । ତା'ର ମନ ହୃଦୟ ସମ୍ମୋହିତ ହୁଏ କବିତାର ସୃଷ୍ଟିରେ ଆଉ ସେ ସଫଳ ହୁଏ ଯେବେ ସେ କବିତା ଅନ୍ୟ ପାଠକ ମାନଙ୍କର ମନଛୁଏଁ । କବିର ସେ କବିତା ଆଉ ନିଜସ୍ୱ ହୋଇ ରୁହେନି ତା'ହୁଏ ସାର୍ବଜନୀନ ।

ବରିଷ୍ଠ କବି ଶ୍ରୀମତୀ ସ୍ନେହମୟୀ ଦାଶଙ୍କର ପ୍ରତ୍ୟେକ କବିତାରେ ଅଛି ଜୀବନର ନିର୍ଯ୍ୟାସ । ଋତୁମାନଙ୍କୁ ନେଇ କବି କେବେ କେବେ ବିଭୋର ହୋଇଛନ୍ତି ତ ସମାଜର ଦୁଷ୍ଟ ଚିତ୍ର କେବେ ବ୍ୟଥିତ କରିଛି କବିପ୍ରାଣକୁ । କଳ୍ପନା ଆଉ ବାସ୍ତବତା ମଧ୍ୟରେ ଯେ ଆକାଶ ପାତାଳ ଫରକ୍ । ଅନେକ କବିତାରେ କବି ପରୋକ୍ଷରେ ଲେଖିଛନ୍ତି ।

ଜୀବନ ଅଛିତ ଦୁଃଖ, ସୁଖ, ପ୍ରେମ, ପ୍ରତାରଣା, ବିଶ୍ୱାସ ଏବଂ ବନ୍ଧନ ନିଶ୍ଚୟ ଅଛି । ଯେଉଁମାନେ ସବୁକୁ ଆଦରି ନିଜସ୍ୱ ଶୈଳୀରେ ବାଟ ଚାଲନ୍ତି ନିରବରେ ସେମାନେ ବହୁ ସଂଘାତର ନିଷ୍ଠୁର ଚକ୍ରବ୍ୟୁହରେ ଘାଣ୍ଟିହୁଅନ୍ତି କିନ୍ତୁ ତା' ଅଳିକ । ଆଉସେଇ ନିର୍ଯ୍ୟାସରୁ ସୃଷ୍ଟିହୁଏ କବିତାର ସ୍ୱର ।

ଯେମିତି କବି ଲେଖିଛନ୍ତି - "ସପନ ଦେଖିଲି ଶେଯ ବିଛେଇଲେ
ସୁଖର୍ ଦରିଆ କୂଳେ
ସପନରେ ଥାଇ ଦେଖେ ମୁଁ ବସିଛି
ଉଦାସୀ ନଈର କୂଳେ"



ସ୍ୱପ୍ନ କେବେ ବାସ୍ତବ ନୁହେଁ କିନ୍ତୁ ସ୍ୱପ୍ନ ବଞ୍ଚିବାର ଏକ ମାପକାଠି । ସ୍ୱପ୍ନ ନଥିଲେ ଜୀବନ ଜଳୁଥାଆନ୍ତା ଯନ୍ତ୍ରଣାର ଯଜ୍ଞଶାଳାରେ । ଯନ୍ତ୍ରଣା ଦୁଃଖକୁ ପ୍ରତିହିତ କରିବାକୁ ସ୍ୱପ୍ନ ଅମୋଘ ଅସ୍ତ୍ର ।

କବିକୁ କେବେ ଦୁଃଖ ଅଭାବ ଯନ୍ତ୍ରଣା ପ୍ରତାରଣା ଏସବୁ ଛୁଁଏନା କାରଣ କଳ୍ପନା ବିଳାସୀ କବି ସେଇଠାରୁ ପାଇଯାଏ ତା'ର ଲେଖନୀ ପାଇଁ ପାଥେୟ ତେଣୁ ଏସବୁ ନିଶ୍ଚୟ ଲେଖକର ସାଥି ସହଚରୀ ।

କାରଣ ବେଳେବେଳେ :-

"ଶରୀରର ନୀଡମଧ୍ୟେ
ଆତ୍ମାପକ୍ଷୀଟିଏ ବହୁଦିନୁ ପଡିଥିଲା ଶୋଇ
ବିବେକର ଡାକରାରେ ହୋଇଛି ଜାଗ୍ରତ
ସଜାଗରେ ରହି ଅଛି ଚାହିଁ"

କବି ସବୁବେଳେ ସ୍ନେହଆଦର ବାଣ୍ଟେ । ନିଜପାଇଁ କିଛି ଚାହେଁନା । ଅନ୍ୟ ପାଇଁ ସର୍ବଦା କବି ବ୍ୟାକୁଳ । କାହାର ଦୁଃଖ ଦୈନତା ନିଜ ଭିତରେ ଅନୁଭବ କରେ କବି ତେଣୁ ବେଳେବେଳେ ଆପେ ଆପେ କଲମ ମଧ୍ୟରେ ଏବଂ ସୃଷ୍ଟିହୁଏ :-

"ମନରେ ଯେବେ ଉଠଇ ଝଡ
ଅନ୍ୟର ସ୍ୱପ୍ନ ସାକାର ପାଇଁ
କସ୍ତୁରୀ ପରି ଧାଏଁ
ସପନ ସବୁ ଯାଆନ୍ତି ହଜି
ରାତିଟି ପାହି ଯାଏ"

କବି କେବେ ନିଜକଥା ଭାବନ୍ତି ନାହିଁ । ସର୍ବଦା କଳ୍ପନାରେ ଏବଂ ଅନ୍ୟମାନଙ୍କ ଦୁଃଖରେ କବିର ହୃଦୟ ଦହନ ହେଉଥାଏ । କିଏ କଣ କହିଲା ନ କହିଲା କବିକୁ ଛୁଁଏନା ତେଣୁ ସେ ସର୍ବସଂହା... ଦୁଃଖକୁ ଆଦରି ସୁଖବାଣ୍ଟିବାରେ କବି ବେଶ୍ ଚଳଚଞ୍ଚଳ ଅନ୍ୟର ଦୁଃଖ ଯନ୍ତ୍ରଣାରେ ଜର୍ଜରିତ କବିପ୍ରାଣ ସ୍ନେହମୟୀ ଦାଶଙ୍କର ପ୍ରତିଟି କବିତା ଜୀବନଧର୍ମୀ, ସରଳ, ଛନ୍ଦମୟ ଏବଂ ସୁଖପାଠ୍ୟ । ପ୍ରତ୍ୟେକ କବିତାରେ କବି ସମାଜର ସଂସାରର ନିଚ୍ଛକ ସତରୂପକୁ ପ୍ରତିବେଦନ କାରିଛନ୍ତି । ସଂସାରର ଏଇ ମହାସାଗରକୁ ପାରି ହେବାକୁ ହେଲେ ଭଗବାନଙ୍କ ନାମ ଏବଂ ସଚୋଟ ଭାବେ ବଞ୍ଚିବା ଯେ ନିହାତି ଆବଶ୍ୟକ ଏହା ଅନେକ କବିତାର ନିର୍ଭେଜାଲ୍ ସ୍ୱର ।



ତେଣୁ କବି କେବେକେବେ କାଳଜୟୀ ହେବାର ଆଶା ପୋଷଣ କରିଛନ୍ତି ତ କେବେ ପଞ୍ଜୁରୀରେ ବନ୍ଦ ଜୀବନର ପରାଧିନତାକୁ ମୁକ୍ତସ୍ୱରରେ ସ୍ୱୀକାର କରିଛନ୍ତି । କେବେ ଭଗବାନଙ୍କୁ ପ୍ରଶ୍ନ କରିଛନ୍ତି ସମାଜର ଏ ଅସମାନତା କଣ ପାଇଁ ପୁଣି କେବେ ଭଗବାନଙ୍କ ସୃଷ୍ଟିର ମୌସୁମୀ, ବସନ୍ତ, ବୈଶାଖର ଆବଶ୍ୟକତା କେତେ ବ୍ୟାପକ ତା ବଖାଣିଛନ୍ତି । କେବେ ମାଆର ବାତ୍ସଲ୍ୟ ଏବଂ ସ୍ଥିତି ସମ୍ପର୍କରେ ପ୍ରତିବେଦନ କାରିଛନ୍ତି ତ, ବିଶ୍ଳେଷଣ କରିଛନ୍ତି ଜୀବନ ଦର୍ଶନକୁ । ସତରେ ଏ ସଂସାର ମୋହ ମାୟା ଭରା । ଆଜି ଯାହା ଅଛି କାଲି ନଥିବ କିନ୍ତୁ ନାରୀ ଜନ୍ମ ନେଉଥିବ ବାରବାର ସର୍ବସଂହା ହୋଇ । ସୃଷ୍ଟି କରୁଥିବ ସମାଜ ସଂସାର । ସବୁ ମାନ ଅଭିମାନ, ଅପମାନକୁ ଭୁଲି କବିତା । ଆଶାକରେ ପ୍ରତ୍ୟେକ ପାଠକ କବିତାର ପ୍ରାଣସ୍ପର୍ଶି ସ୍ୱରକୁ ନିଜ ˆB bØüe @ˆBa Keòa ÛIଜୀବନ ସଙ୍ଗୀତ" କବିଙ୍କର ଏକ ସଫଳ କୃତି ।

।। ଧନ୍ୟବାଦ ।।

ବାସନ୍ତୀ ଦାସ

ସମ୍ପାଦିକା - ଶିଳାଶ୍ରୀ



# ଜୀବନ ସଙ୍ଗୀତ : ଏକ ଦୃଷ୍ଟିପାତ

କବିର କବିତା ଏକ ସୂକ୍ଷ୍ମକଳା । ସେଇ କଳା ମାଧ୍ୟମରେ ସେ ଅଦିନରେ ଗୋଲାପ ଫୁଟାଇ ପାରେ ଏବଂ ମଲ୍ଲୀର ମହକ ଛୁଟାଇ ପାରେ । ଯେଉଁ କବିତା ପାଠକ ଶ୍ରୋତାର ମନପ୍ରାଣକୁ ସମ୍ମୋହିତ କରେ ଏବଂ ତା ମନରେ ଏକ ଅଲିଭା ଛାପ ରଖିଦିଏ, ତାହାହିଁ କାଳଜୟୀ କବିତା ।

କବିତାତ ଅନେକ ଲେଖୁଛନ୍ତି, ମାତ୍ର ଭାବ ଭାଷା ଓ ମାଧୁର୍ଯ୍ୟ ଅଭାବରୁ ତାହା କବିତା ପଦବାଚ୍ୟ ହେଉନାହିଁ । ସାରଳା ଦାଶଙ୍କଠାରୁ ଆଧୁନିକ ଓଡ଼ିଆ ସାହିତ୍ୟ ଯୁଗ ପର୍ଯ୍ୟନ୍ତ କବିତା ଛନ୍ଦାୟିତ ହେଉଥିଲା । ପରେ, ବେଛନ୍ଦ କବିତା ଲେଖା ଗଲେବି ଏବେକାର କବିତାରେ ଏକ ଅନ୍ତଃଛନ୍ଦ ଶୋଭା ମଣ୍ଡନ କରୁଛି । ଯାହା ଫଳରେ କବିତାର ମାଧୁର୍ଯ୍ୟ ବଢିଛି ।

ଶ୍ରୀମତୀ ସ୍ନେହମୟୀ ଦାଶଙ୍କ "ଜୀବନ ସଙ୍ଗୀତ" କବିତା ସଙ୍କଳନରେ ଥିବା କବିତା ଗୁଡ଼ିକରେ ଅନ୍ତରାତ୍ମା ବେଶ୍ ସୁନ୍ଦର । କବିଙ୍କ ଭାବନାକୁ ଯାହା ସ୍ପର୍ଶ କାରିଛି, ତାକୁ ସେ ସହଜ, ସରଳ ଭାବରେ ପ୍ରକାଶ କରିବାରେ ସକ୍ଷମ ହୋଇଛନ୍ତି । ତାଙ୍କ ଦୃଷ୍ଟି ଅତି ତୀକ୍ଷ୍ଣ ଭାବରେ ଭାବର ଗଭୀରତମ ପ୍ରେଦଶକୁ ଯାଇ ପାଠକଙ୍କୁ ଆମୋଦିତ କାରୁଛି । ଅନେକ କବିତା ବେଶ୍ ବୌଦ୍ଧିକ । ରୂପକଳ୍ପ ଗୁଡ଼ିକ ଚମତ୍କାର ଏବଂ ସଠିକ୍ ପ୍ରୟୋଗ ହୋଇଛି ।

ଏଇ କବିତା ଗ୍ରନ୍ଥରୁ ଅନେକ କବିତା ମୁଁ 'କବିତା ପାଠ' ଉତ୍ସବ ମାନଙ୍କରେ ଶୁଣିଛି । ତାଙ୍କର ପଠନ ଶୈଳୀ ମଧ୍ୟ ସୁମଧୁର ଓ ଶ୍ରୋତା ମନକୁ ଆଲୋଡିତ କରେ ।

ଆଶା, ଏ କବିତା ଗ୍ରନ୍ଥଟି ପାଠକୀୟ ଆଦର ପାଇବ ।

- ନାରାୟଣ ବ୍ରହ୍ମା



## ନୀଜକଥା

ରାତ୍ରିର ନିସ୍ତବ୍ଧ ପ୍ରହରରେ ସମସ୍ତେ ଯେତେବେଳେ ଗଭୀର ନିଦ୍ରାରେ ଘୁମେଇ ପଡିଥାନ୍ତି ମୋର ଏ ମାଟି ଘଟ ଜାଗିରହି ଭାବନା ରାଇଜରେ ଘୁରି ବୁଲୁଥାଏ । ଦିନରେ ଯେଉଁକିଛି ଚରିତ୍ରଙ୍କର ସହ ମିଶିଥାଏ, ସେମାନଙ୍କ ମଧ୍ୟରୁ ଅନେକ ଖୁସି ଭିତରେ ମଜ୍ଜିଯାଇଛନ୍ତି ତ ଅଧିକାଂଶ ଦୁଃଖ, ଶୋକ ଓ ରୋଗ ଭିତରେ ନିଜେ ହଜି ଯାଇଥାନ୍ତି । ସେମାନଙ୍କ ଜୀବନ ଚରିତରୁ ଯେଉଁ ୧୦/୧୨ ଟି ଶବ୍ଦକୁ ମନ ଭିତରେ ଝାଟି କରି ପୋତିଥାଏ । ତାକୁ ଏଇ ଭାବନା ରାଇଜରେ ରହି ସେହି ଝାଟି ଦେହରେ କିଛି କାଳ୍ପନିକ ମାଟି ଦେଇ ସୃଷ୍ଟି କରେ କବିତାର କିଛି ଅବୟବ । ସେହି ଅବୟବକୁ ଏକାଠି କରି ଆଜିର ଏ ମାନସ କନ୍ୟା ଜୀବନ ସଙ୍ଗୀତର ସୃଷ୍ଟି । ଏହି କବିତା ସଙ୍କଳନରୁ ଅନେକ କବିତା ବିଭିନ୍ନ ପତ୍ରିକାରେ ପ୍ରକାଶ ପାଇଛି । ତାକୁ ଏକାଠି କରି ପାଠକ ମାନଙ୍କ ପାଖରେ ପହଞ୍ଚେଇବାକୁ ମୋର ଆଶା ଥିଲା । ତାହା ଆଜି ସଫଳ ହୋଇଛି ମୋର ଧାନ ଭଉଣୀ ଶିଳାଶ୍ରୀ ପତ୍ରିକାର ସଂପାଦିକା ବାସନ୍ତୀ ଦାସ ଲାଗି । ତାର ପ୍ରକାଶ କାରିବାର ଆଗ୍ରହ ଦେଖି ତା ପାଖରେ ଋଣୀ ।

ବାସନ୍ତୀ ମଧ୍ୟ ସଙ୍କଳନଟିର ସଂକ୍ଷିପ୍ତ ମୁଖବଂଧ ଲେଖି ଥିବାରୁ ମୁଁ ବାସନ୍ତୀକୁ ଧନ୍ୟବାଦ ଦେଉଛି । ଏଇ କବିତା ଗୁଡିକ ପାଠକ ମାନଙ୍କ ମାନକୁ ଛୁଇଁଲେ ମୋର ଶ୍ରମ ସାର୍ଥକ ହେବ ।

**ସ୍ନେହମୟୀ ଦାଶ**



## ସୂଚୀପତ୍ର


| କ୍ର.ନଂ. | ବିଷୟ | ପୃଷ୍ଠା |
|---|---|---|
| ୧. | ମନ୍ଥନ | ୧୧ |
| ୨. | ମମତା ନଈ | ୧୩ |
| ୩. | ମନର ଅତଳ ସାଗରରେ | ୧୫ |
| ୪. | ଶ୍ରାବଣକୁ ଚିଠି | ୧୬ |
| ୫. | ଅବୁଝା | ୧୮ |
| ୬. | ସମ୍ପର୍କର ସେତୁ | ୨୦ |
| ୭. | ଆଶାର ସୌଧ | ୨୨ |
| ୮. | ସବୁଜ ସକାଳେ | ୨୪ |
| ୯. | ଅକ୍ଷୟ ତୃତୀୟା | ୨୬ |
| ୧୦. | କାଳଜୟୀ | ୨୭ |
| ୧୧. | ବର୍ଷା | ୨୯ |
| ୧୨. | କଥୋପକଥନ | ୩୧ |
| ୧୩. | ଉତ୍କଳ ଦିବସ | ୩୪ |
| ୧୪. | ବାସନ୍ତୀ ରଙ୍ଗ (ହୋଲି) | ୩୬ |
| ୧୫. | କିଏ ସେ | ୩୭ |
| ୧୬. | ପଞ୍ଜୁରୀ | ୪୦ |
| ୧୭. | ଅଗଷ୍ଟ ପନ୍ଦର | ୪୨ |
| ୧୮. | ଅବୁଝା | ୪୫ |
| ୧୯. | କୁହ ପ୍ରଭୁ | ୪୬ |
| ୨୦. | ବସନ୍ତେ ବାସନ୍ତୀ | ୪୮ |
| ୨୧. | ହେମନ୍ତ ମିଳନକୁ ପଦେ | ୫୨ |
| ୨୨. | ଗୁଲି | ୫୪ |
| ୨୩. | ଶ୍ରାବଣୀ | ୫୭ |
| ୨୪. | ଅଭିଲା ଦୀପ | ୫୮ |
| ୨୫. | ସତ୍ୟ | ୬୦ |
| ୨୬. | ସପନ ଦେଖିଲି | ୬୨ |
| ୨୭. | ଭାରତ ମାତାର | ୬୩ |
| ୨୮. | ମାଆ | ୬୬ |
| ୨୯. | ମାଆ ଓ ମମତା | ୬୮ |
| ୩୦. | କବିତା ବନିତା ଲତା | ୬୯ |
| ୩୧. | ଯଦି ମୁହିଁ ଯାଣିଥାନ୍ତି | ୭୦ |
| ୩୨. | ଆସ ବର୍ଷା | ୭୨ |
| ୩୩. | ମୌସୁମୀ | ୭୫ |
| ୩୪. | ଜୀବନ ବୈଶାଖି | ୭୭ |
| ୩୫. | ବସନ୍ତ | ୭୯ |
| ୩୬. | ପାଷାଣ | ୮୧ |



| କ୍ର.ନଂ. | ବିଷୟ | ପୃଷ୍ଠା |
|---|---|---|
| ୩୭. | ମହାକାଳ କିଏ | ୮୩ |
| ୩୮. | ଶାରଦୀୟ ସନ୍ଧ୍ୟା | ୮୫ |
| ୩୯. | ଭଉଁରୀ | ୮୭ |
| ୪୦. | ସଂପର୍କ | ୮୯ |
| ୪୧. | ବିଶ୍ଳେଷଣ | ୯୧ |
| ୪୨. | ଜୀବନ ତତ୍ତ୍ୱ | ୯୩ |
| ୪୩. | ଅଳସୀ କନ୍ୟା | ୯୫ |
| ୪୪. | ସ୍ୱପ୍ନ ସୁନ୍ଦରୀ | ୯୭ |
| ୪୫. | ନବବର୍ଷ | ୯୮ |
| ୪୬. | ଅଦୃଶ୍ୟ ଇଙ୍ଗୀତ | ୧୦୦ |
| ୪୭. | ଅନ୍ତରଙ୍ଗ | ୧୦୨ |
| ୪୮. | ସର୍ବସଂହା | ୧୦୪ |
| ୪୯. | ପ୍ରଶ୍ନ | ୧୦୭ |
| ୫୦. | କେତୋଟି ମୁହୂର୍ତ୍ତ | ୧୦୯ |
| ୫୧. | ଅଗଷ୍ଟ ପନ୍ଦର | ୧୧୧ |
| ୫୨. | ମନସ୍ୱିନୀ | ୧୧୩ |
| ୫୩. | ଅହଁକାର | ୧୧୫ |
| ୫୪. | ମୃତ୍ୟୁକୁ ମୋ ଭୟ ନାହିଁ | ୧୧୯ |
| ୫୫. | ଶୂନ୍ୟତାର | ୧୨୧ |
| ୫୬. | ରଙ୍ଗ | ୧୨୩ |
| ୫୭. | ଆସ ଋତୁରାଜ ଆସ ବସନ୍ତ | ୧୨୬ |
| ୫୮. | ଚିଟଉ | ୧୨୮ |
| ୫୯. | ମହିଳା ଦିବସ | ୧୩୦ |
| ୬୦. | ଘର | ୧୩୧ |
| ୬୧. | କବିଟିଏ ହେବି | ୧୩୩ |



# ମନ୍ଥନ

ଶରୀର ନୀଡ଼ ମଧ୍ୟେ
ଆତ୍ମା ରୂପୀ ପକ୍ଷୀଟିଏ
ବହୁଦିନୁ ପଡ଼ିଥିଲା ଶୋଇ
ବିବେକର ଡାକରାରେ
ହୋଇଛି ଜାଗ୍ରତ
ସଜାଗରେ ରହିଅଛି ଚେଇଁ ।
ଶକୁନର ଚଞ୍ଚୁମୁନେ
ଖୁମ୍ପିଖୁମ୍ପି ବାରମ୍ବାର
ହୃଦୟ ତା' ଖଣ୍ଡ ବିଖଣ୍ଡିତ ।
ବିବେକ ଦଂଶନ ଖାଇ
ଯନ୍ତ୍ରଣାର ଯାତନାରେ
ହୃଦୟ ତା' ହୁଏ ସନ୍ତୁଳିତ ।
ଦିନ ଦିନ ରାତି ରାତି
ସମସ୍ତଙ୍କ ସାଙ୍ଗେ କରି ଯୁଦ୍ଧ
ସେ ଆଜି ଅରକ୍ଷ
ବାଲିଚରେ ସମୟର ସୂଅ କାଟି
ଜୀବନଟା ଲାଗେ ତାକୁ
କାରାଗାର କକ୍ଷ ।
ମନେ ତାର ବାନ୍ଧିଥିବା ବସା
ଥିଲା କେତେ ଆଶା ଓ ନିରାଶା
ସବୁ ଆଜି ହୋଇଅଛି ଚୂର୍ଣ୍ଣ,



ବର୍ତ୍ତମାନେ ଭାବଇ ଅତୀତ
ଥିଲା ବୋଧେ ପ୍ରତାରଣା ପୂର୍ଣ୍ଣ ।
ତାଆ ପାଇଁ ତା' ଆଙ୍ଗନ ଦିନେ
ହସୁଥିଲା ଖିଲିଖିଲି ହୋଇ
ସବୁଠି ସେ ଆଜି ହିନୀମାନ
ସବୁ ଦୋଷ ସବୁ ରୋଷ
ଥାପି ନିଜ ମାଥେ
ଶରୀର ତା' ଆଜି ଜରାଜୀର୍ଣ୍ଣ ।
ଯେ ଥିଲା ସଙ୍ଗ ସମ୍ପୂର୍ଣ୍ଣା
ଯା ଗୁଣେ ମହକୁ ଥିଲାରେ
ଯେ ଘର ଦୁଆର,
କିନ୍ତୁ ସବୁ ଆଜି ଦିଶୁଛି ଶ୍ରୀହୀନ,
ସବୁ ସୁଖ ଯାଇଛି ଉଜୁଡ଼ି
ସିଏ ଆଜି କେଡ଼େ ନାରଖାର ।
ସେଇ ଦିନ ସେଇ ମନ
ଆଉ କ'ଣ ଆସିବକି ଫେରି
ଦେବା ପାଇଁ ତା' ମାଥେ ଚନ୍ଦ.
ସତେ ଯେବେ ଚନ୍ଦ୍ର ସୂର୍ଯ୍ୟ
ପାଲଟନ୍ତେ ନିଜ କକ୍ଷ
ତାଙ୍କ ପଦ କରନ୍ତା ବନ୍ଦନ ।

*********



# ମମତା ନଈ

ନଈରେ ଯେବେ ଆସଇ ଜଳ

ଭାଙ୍ଗୁଳେ ଦୁଇ କୂଳ

ମମତା ନଈ ବହୁଛି ସିନା

ଶୁଖିଛି ଦୁଇ ଧାର ।

ନଈର ସୁଅ ଅନୁକୂଳରେ

ଯାଉଛି ସିନା ବହି

ପ୍ରତିବନ୍ଧକ ଆସଇ ଯେବେ

ବହଇ ରହି ରହି ।

ମମତା ନଈ ରୋକେନା କେବେ

ଅବାଧ ତା'ର ଗତି

ବାଲିପନ୍ତାକୁ ରହିଣ ଚାହିଁ

ଭାବଇ ବସି ନିତି ।

ଅନେକ ଆଶା ପାଇବା ନିଶା

ମନରେ ଜାଗେ ମୋହ

ମିଳାଇ ଗଲେ ଆଶା ଓ ନିଶା

ଅନ୍ତରୁ ଉଠେ କୋହ ।

ଅନୁରାଗରେ ସରାଗେ ବସି

ଜାଳେ ପ୍ରୀତିର ଦୀପ



ମମତା ନଈ କୂଳରେ ବାସେ

ସ୍ନେହ ଶ୍ରଦ୍ଧାର ଧୂପ ।

ଲୁଚାଇ ଦୁଃଖ ହସଇ ନିତି

ଉଚ୍ଛୁଳା ନଈ ପରି

ଆଖିର ଲୁହ ଯାଏଟି ବହି

ନଈର ଧାର ପରି ।

ମନର ଦୁଃଖ ମନରେ ଚାପି

ପ୍ରୀତି ପିୟୂଷ ଢାଳେ

ସମୟ ଚକ୍ରେ ପାରେନା ଜାଣି

ବୟସ କେବେ ସରେ ।

*********



# ମନର ଅତଳ ସାଗରରେ

ମନର ଅତଳ ସାଗରରେ ହଜି ଯାଇଛି
କାହିଁ କେତେ ଦିନୁ ସ୍ମୃତିର ମୁକ୍ତା ସବୁ
ଦିନ ପରେ ଦିନ ସବୁ ହୋଇ ଅତିକ୍ରାନ୍ତ
ମୁକ୍ତା ସଙ୍ଗେ ଗୁନ୍ଥା ସବୁ ପ୍ରେମ ପ୍ରୀତି
ଗୌରବ ସୌରଭ ସଙ୍ଗେ ମଧୁର ମୁହୂର୍ତ୍ତ।
ଋତୁର ମହକ ସଙ୍ଗେ
କେତେ ସ୍ୱପ୍ନ କେତେ ଉପହାର
ମମତା ରଜ୍ଜୁରେ ହୋଇଛନ୍ତି ବନ୍ଧା
ଜଡ଼ି ହୋଇ ପରସ୍ପର।
ସୁନୀଳ ଆକାଶେ ଦିଗବଳୟ ପରେ
ସୂର୍ଯ୍ୟ ଅସ୍ତ ଗଲା ପରି ଅଥଳ ଗର୍ଭରେ
ଯାଉଛନ୍ତି ଲୁଚି ନିଷ୍ପ୍ରଭ ଆଲୋକ ପରି।
ଖୋଜି ଖୋଜି ମୁହିଁ
ପଡ଼ିଲେଣି ଥକି
ସିନ୍ଧୁ ଭିତର ବାହାର
ହଜିଲା ଜିନିଷ ମିଳିବକି ଆଉ
ପାରାବାର ଅନ୍ଧକାର।
ପୁରୁଣା ଦିନର ଅତୀତର ସ୍ମୃତି
ଖୋଜୁଥିବା ବସି ଯେବେ
ସେଇ ବୟସକୁ ଫେରିଯାଅ ଚାଲି
ଆଉ ନ ଫେରିବ କେବେ।

********



# ଶ୍ରାବଣକୁ ଚିଠି

ଶ୍ରାବଣକୁ ଚିଠି ଲେଖିଛି ବରଷା
ଧଳା ନୀଳ ଲଫାପା ରେ
ମୋ ବାଟକୁ ଚାହିଁ ବସିଥିବା ବନ୍ଧୁ
ଡେରିଯିବ ନାହିଁ ଖରେ ।
ବରଷା ରାଣୀ ମୁଁ ଅଳସୀ କନିଆଁ
ଶୋଇଛି ବାଦଲ ଶେଯେ
ଇନ୍ଦ୍ରଧନୁ ମୋତେ ଦେଇଛି ରଙ୍ଗେଇ
ରହିଅଛି ମୁଖ ଲାଜେ ।
ଜୀମୂତ ବାହାନେ ଯିବା ପାଇଁ ଆଜି
ବସିଛି ମୁଁ ସଜ ହୋଇ
ଭୁଲି କି ଯାଇଛ ବରଷେ ହେଲାଣି
ଦେଖା ଆମ ହୋଇନାହିଁ ।
ତୁମ ମନକଥା ବୁଝୁନାହିଁ ବୋଲି
କରିଅଛ ଅଭିମାନ
ତୁମ କଥା ଭାବି ଝୁରୁଅଛି ଖାଲି
ଯିବା ପାଇଁ ଛନଛନ ।
ବିରହର ଦୁଃଖ ଯାଇଅଛି ଚାଲି
ପ୍ରୀତିର ପରଶ ଦେଇ
ଅଚିରେ ମିଳନ ହୋଇବ ଆମର
ବାଜିଲାଣି ସାହାନାଇ ।
ନୈଶ ଅଭିସାରେ ବାହାରିବା ଆମେ
ପାହିଯିବ ଅମାରାତି



ନିଝୁମ ରାତିରେ ନାଚୁଥିବା ଦୁହେଁ
ହୋଇ ଆପଣାର ସାଥୀ ।
ତୁମ ଲୁହ ସଙ୍ଗେ ମୋ ଆଖିର ଲୁହ
ଯାଉଥିବ ବହି ବହି
ଶ୍ରାବଣ ବର୍ଷାର ଝର ଝରିଝରି
ପାଇଟିବ କେତେ ନଈ ।
ମନ ଉପବନେ ଭିଜୁଥିବା ସିନା
ନାଚୁଥିବା ଝୁଲିଝୁଲି
ବିଜୁଳି ହସରେ ନଭ ନୟନରେ
ଦିଶୁଥିବା ଝିଲିମିଲି ।
ରିମିଝିମି ଶବ୍ଦେ ଜାଗ୍ରତ ହୋଇବେ
ଦୁଲୁକି ଉଠିବ ମହୀ
ଭେକ ପରିବାର ଖୁଣ୍ଟୁଥିବେ ପୋକ
ବିଭାଘର ଭୋଜି ପାଇଁ ।
ତୃଷା ମେଣ୍ଟିଯିବ ଚାତକ ପକ୍ଷୀର
ନାଚିବେ ବନ ମୟୂରୀ
ଘାସ ପଡ଼ିଆରେ ସାଧବ ବୋହୂଟି
ଚାଲୁଥିବ ଥିରିଥିରି ।
ତୁମେ ସିନା ବନ୍ଧୁ ଯାଇଥିଲ ଭୁଲି
ମୁଁ ତୁମକୁ ଭୁଲିନାହିଁ
ଦିନଦିନ ଧରି କରିଛି ଅପେକ୍ଷା
ତୁମରି ପରଶ ପାଇଁ ।

********



# ଅବୁଝା

ଜୀବନେ ଯବେ ଉଠଇ ଝଡ଼

ପଡ଼ଇ ବାଜି ଲୋଟଇ ଯାଇ

ଅବୁଝା ନଇ କୂଳେ,

ନଇକୂଳିଆ ପବନ ବାଜି

ମନର ବସା ପଡ଼ଇ ଛିଡ଼ି

ମନର ପକ୍ଷୀ ଯାଏଟି ଉଡ଼ି

କାହିଁ ଯେ କେତେ ଦୂରେ ।୧।

ତଳକୁ ଦେଖି ରହିଲା ଲାଖି

ଦୁଇ ଆଖିଟି ମୋର

ଜନ ସମାଜ ସୁସ୍ୱାର୍ଥ ହ୍ରଦେ

ଭାସନ୍ତି ନିରନ୍ତର । ୨।

ବିନା ସ୍ୱାର୍ଥରେ କେହି କାହାରି

କଥା ଶୁଣନ୍ତି ନାହିଁ

ଭଲପାଇବା ହାତ ବଢ଼ାଇ

ଥକି ପଡ଼ିଲି ମୁହିଁ ।୩।

କାଳ ବୈଶାଖୀ ଆଣିଲା ସାଥେ



ଅଦିନିଆର୍ ଝଡ଼,
ନିମିଷ ମଧ୍ୟେ ଭାଙ୍ଗିଦେଲାସେ
ସପନେ ଗଢ଼ା ନୀଡ଼ ।୪।
ନୀଳ ସାଗର୍ ବେଳାଭୂମିରେ
ପଡ଼ିଲି ନିଦେ ଶୋଇ
ଦେଖିଲି ଦୂରେ ମଳୟ ହସେ
ପରିହାସରେ ଚାହିଁ ।୫।
ଅନ୍ୟର୍ ସପ୍ନ ସାକାର୍ ପାଇଁ
କସ୍ତୁରୀ ପରି ଧାଏଁ
ସପନ ସବୁ ଯାଏଟି ହଜି
ରାତିଟି ପାହି ଯାଏ ।୭।
ପ୍ରଥମ ଉଷା ଆଲୋକ ଦେଇ
ଗୋଧୂଳି ଯାଏ ହୋଇ
ମୋ ମନ ପକ୍ଷୀ ଉଡ଼ୁଛି କାହିଁ
ତା' ଡେଣା ଝାଡ଼ି ଦେଇ ।୭।

********



# ସମ୍ପର୍କର ସେତୁ

କିଛି ରଙ୍ଗ କିଛି ସ୍ୱପ୍ନ କିଛି ହସର
ସମାହାରରେ
ବୟସର ପ୍ରଥମ ପାହାଚରେ
ପାଦ ଦଉ ଦଉ
ତୁମ ସାଙ୍ଗେ ହେଲା ଦେଖା
ସମୟ କ୍ରମରେ
ସମ୍ପର୍କର ସେତୁ ବାନ୍ଧି ଦେଇ ତୁମେ
ସାଜିଥିଲା ବନ୍ଧୁ ସଖା । (୧)
ସମ୍ପର୍କର ସେତୁ ବାନ୍ଧିଥିଲ ନିଜେ
ଦେଇ ସ୍ନେହ ପ୍ରେମ ପ୍ରୀତି
ସେ ବନ୍ଧରେ ନିତି ସାଥୀ ଦେବା ପାଇଁ
ଦେଇଥିଲ ପ୍ରତିଶ୍ରୁତି । (୨)
ତୁମରି କଥାର ଚାତୁରୀରେ ଭୁଲି
ଭୁଲିଗଲି ମୁଁ ନିଜକୁ
କରିଲି ଶପଥ ସମ୍ପର୍କର ସେତୁ
ମଜଭୁତ କରିବାକୁ । (୩)
ଏକରୁ ଅନେକ ବଳୟ ଭିତରେ
ମଳୟ ସୁରଭି ଦେଇ
ସ୍ନେହ କ୍ଷମା ଦୟା ପ୍ରେମର ବାରିରେ
ମନ ସବୁ ଦେଲି ଧୋଇ । (୪)



କରି ସ୍ୱାର୍ଥ ତ୍ୟାଗ ସବୁରି ସେବାରେ
 କାର୍ପଣ୍ୟ ମୁଁ କରିନାହିଁ
ଜୀବନ ସାଗରେ ଆଲୋକର ପୋତ
 ଦେଇଛି ନିତି ଜଳାଇ । (୫)
ଆରମ୍ଭରୁ ଶେଷ ଦେଇ ମୁଁ ଚାଲିଛି
 ପ୍ରତିଦାନ ମୁଁ ପାଇନାହିଁ
ପ୍ରତି ବଦଳରେ ପାଇଛି ମୁଁ ଧୋକା
 ଲାଞ୍ଛନା ଯାଇଛି ସହି । (୬)
ତଥାପି ରହିଛି ବାସନା ଟିକକ
 ପ୍ରଶ୍ନ ଆସେ ବାରମ୍ବାର
ପଡ଼ିଗଲେ ଝୁଣ୍ଟି ଟୋଳିନେବ ତଳୁ
 ହାତଟିକି ଧରି ମୋର । (୭)
ଆଖିର ଲୁହ ମୋ ପଚାରେ ତମକୁ
 ନୀରବରେ ଥାଅ ବସି
ଭଙ୍ଗା ହୃଦୟ ମୋ ପାରେ ନାହିଁ ଛୁଇଁ
 ଓଠ ପାଖେ ଦିଅ ହସି ।୮।
ଅକସ୍ମାତେ ଯଦି ଆସିଯାଏ ରାତି
 ସୂର୍ଯ୍ୟ ହୋନ୍ତି ଅସ୍ତଗାମୀ
ଜୋଛନା ଆଲୋକେ ଫୁଲର ମହକେ
 ହୋଇବ ମୋ ଅନୁଗାମୀ ।୯।
ଧରିଥିବା ହାତ ହୋଇଥିବ ସାଥୀ
 ଅନିଶ୍ଚିତ ଅନ୍ତରାଳେ
ଆନନ୍ଦ ବିସ୍ମୟେ ରହିଥିବା ଚାହିଁ
 ଦୂର ଦିଗବଳୟର ତଳେ ।୧୦।

********



# ଆଶାର୍ ସୌଧ

ଆଶାର୍ ସୌଧ ଗଢୁଥିଲି ସିନା
ଭାଙ୍ଗୁଥିଲି ପ୍ରତିଦିନ
କଳ୍ପନାରେ ଆଙ୍କି କଥା ହେବା ପାଇଁ
ଦେଉଥିଲି ଜୀବଦାନ ।୧।

ଗଛ ବଉଳିଲା ଫୁଲ୍ ଫୁଟେଇଲା
ସୁରଭି ବିଛେଇଦେଲା
ବିନା ବସନ୍ତରେ ଗଛ ଡାଳେ ବସି
କୋଇଲି କୁହୁ କହିଲା ।୨।

ମନ ଛନଛନ ଗାଇବାକୁ ଗୀତ
ଜୀବନର୍ ସୁର୍ ଧରି
ନୀଳ ଆକାଶରୁ ଧଳାଲୁଗା ପିନ୍ଧି
ଜହ୍ନ ହସେ ଥିରିଥିରି ।୩।

ତା ହସରେ କଇଁ ଉତ୍ଫୁଲ୍ଲିତ ହୋଇ
ଝରାଏ ପ୍ରୀତିର୍ ଝର୍
କଅଁଳ ପତରେ ଓଠେ ଚମକଇ
ବିମଳ ହସ ମଧୁର୍ ।୪।

ଚୋରା ଚଇତାଳି ଆସୁ ଆସୁ ବାଟେ
ହଜିଗଲା ତା' ମଳୟ
ମଧୁପ ଗୁଞ୍ଜନେ ଦଉଥିଲା ପୁଷ୍ପ
ତା' ଦେହ ସୁଗନ୍ଧମୟ ।୫।

ଭାବନାରେ ଭାସି ଦେଲି ମୁହିଁ ହସି
ବନ୍ଧୁର୍ ହେଲା ମୋ ପଥ

ଅଜଣା ପଥରେ ଯାଉ ଯାଉ ବାଟେ
ଅଟକି ଗଲା ମୋ ରଥ ।୭।
ଆଶା ରହିଗଲା ଆଶାରେ ଆଶାରେ
କଳ୍ପନାରେ ଗଲି ଭାସି
କଥା ବହିଗଲା କଥାର ସ୍ରୋତରେ
ମନ ହୋଇଲା ମୋ ବାସି ।୭।

********



# ସବୁଜ ସକାଳେ

ଭାଗ୍ୟଚକ୍ର ସବୁଜ ସକାଳେ
ସଚିତ୍ର ସ୍ମୃତିର ସମ୍ପର୍କକୁ ଯୋଡୁଥାଏ ନିତି,
ଲାଜନୀଳ ଶିଉଳିର ଗାର ଟାଣି
ପ୍ରୀତି ର ସନ୍ତକକୁ କରଇ ସ୍ଥପତି ।୧।
ଅମୃତ କରାଇ ପାନ ଶିଖାଏ ମଧୁର ଗାନ
ତା' ଖୁସିରେ ଢାଳିଦିଏ ସ୍ନେହର ଝରଣା
ତଥାପି ମୋ ଜୀବନର ବାରବାଟୀ ଦୁର୍ଗ 'ାଟି
ଧସି ପସେ ସନ୍ଦେହ କୁହୁଡ଼ି ସଙ୍ଗେ ତିକ୍ତ
ପ୍ରତାରଣା ।୨।
ମେରୁର ସମୁଦ୍ର ପରି
ଏ ଦେହରମାଟି କାନ୍ଥ ଚଉକାଠ
ହୋଇଛି ଚିତ୍ରିତ
ସୁଖ ଦୁଃଖ ଗହଣାରେ ମଣ୍ଡି ମୋର ଦେହ
ମୋ ସତ୍ତାର କରିଛି ପ୍ରତୀକ୍ଷା
ସମୟର ସୀମାହୀନ ଅନ୍ତ ।୩।
ବିଳମ୍ବରେ ହେଲେ ମଧ୍ୟ ଯାତ୍ରା ଶେଷେ
ଏ ଯାତନା ହେବ ଦିନେ ଅନ୍ତ
ନଦୀର ସ୍ରୋତ ପରି ପ୍ରମତ୍ତ ହେବ ପ୍ରବାହ
ଲଭିଥିବ ଯେତେ ଯେତେ ସ୍ୱପ୍ନ ଶରାଘାତ ।୪।



ସେତେବେଳେ ଖୋଜିବେ ସମସ୍ତେ

ଢାଳିବେ ସମବେଦନା

ଚାହୁଁଥିବେ ଆଦାନ ପ୍ରଦାନ,

ହଜିଥିବା ଅତୀତକୁ ସାଉଁଟି ସାଉଁଟି

ଆନ୍ଦୋଳିତ ହେଉଥିବ ମନ ।୫।

ଏ ବେଳାରେ ତୁମ ପାଶେ ନଥିବ ଟି କିଛି ଆଉ

ଶୁଭୁଥିବ ଖାଲି ଜୟଗାନ ।

ପଛକୁ ସେ ଫେରିବନି ଆଉ

ମାଥେ ମାରି କୁଙ୍କୁମ ଚନ୍ଦନ ।୬।

********



# ଅକ୍ଷୟ ତୃତୀୟା

ଆଜି ଯେ ଅକ୍ଷୟ ତୃତୀୟା
କେଡ଼େ ପୁଣ୍ୟର୍ ଦିନ
ପୁଣ୍ୟ କଲେ଼ ପାପ ଧୋଇବ
ଏହା ସତ୍ୟ ବଚନ ।୧।
ବଡ଼ ଦେଉଳରେ଼ ଶ୍ରୀଜଗନ୍ନାଥଙ୍କ
ବାର୍‌ମାସେ ତେର୍ ପର୍ବ,
ବୈଶାଖ ମାସର୍ ଶୁକ୍ଳ ତୃତୀୟାଟି
ତା ମଧ୍ୟରୁ ଏକ ପର୍ବ ।୨।
ଏହି ଦିନ ନାମ ଅକ୍ଷୟତୃତୀୟା
ଅକ୍ଷୟ଼'ଳ ଦାୟିନୀ,
ଏହି ଦିନ ଯିଏ କରେ଼ ଦାନ ପୂଣ୍ୟ
ସେ ଅଟେ ସୌଭଗ୍ୟ ମଣି ।୩।
ଏହି ଦିନ ଯିଏ ଜପ ଯଜ୍ଞ କରେ଼
ମିଳଇ଼ ଅନନ୍ତ 'ଳ,
ଏ ତିଥିରେ଼ ଯିଏ କରେ଼ ଉପବାସ
ଲଭଇ଼ ଅକ୍ଷୟ 'ଳ । ୪।
ଏ ପୂଣ୍ୟ ତିଥିରେ଼ ଯୁଗ ବଦଳଇ଼
ସତ୍ୟ, ତ୍ରେତା ଓ ଦ୍ୱାପର,
ଏ ପୂଣ୍ୟ ତିଥିରେ଼ ପୂଣ୍ୟ ଅରଜିଲେ଼
ପାପ ହୋଇଯାଏ ଦୂର଼ ।୫।
ଶାଶ୍ୱତ ସତ୍ୟକୁ ଉପଲବ୍ଧ କରି଼
ପର଼ ଉପକାର଼ ପାଇଁ,
କୃଷକ ବାପୁଡ଼ା କୃଷି କୃଷ୍ଟି ଯଜ୍ଞେ
ନିତି ବଳି ପଡୂଥାଇ଼ ।୬ ।



# କାଳଜୟୀ

କିଏ ସେ ଅଜଣା ଆସିଅଛ ତୁମେ
ମୃତ୍ୟୁର୍ ଓ୍ୟାରେ୍ ନେଇ୍
ଶୂନ୍ୟ ଆତ୍ମାଟିକୁ ନେଇଯିବ ସିନା
ମୋର୍ ମୃତ୍ୟୁ ହାଇନାହି ।୧।

ଅମୃତ ସନ୍ତାନ ମୁଁ ଧରାରେ୍ ଜନ୍ମିଛି
ନାହି ମୋର୍ ମୃତ୍ୟୁ ଯୋଗ
ଫେ'ରିଯାଅ ତୁମେ ହେ କାଳପୁରୁଷ
ଦୁଃସାହସ କର୍ ତ୍ୟାଗ ।୨ ।

ଜନ୍ମ ଭୂମି ମୋର୍ ଧର୍ମ କର୍ମ ଭୂମି
ଧରିତ୍ରୀ ମୋର୍ ମାଆ
ସରଗଠୁ ବଡ଼ ମାଆ ମାତୃଭୂମି
ଭୁଲି୍ ନପାରିବି ତାହା ।୩ ।

ମାତୃଭୂମି ପାଇଁ କରିଅଛି ତ୍ୟାଗ
ଏ ମାଟି ମର୍ ଶରୀର୍
କାଳଜୟୀ ମୁହିଁ ନୁହେଁ ତୋ ଅଧୀନ
ମୃତ୍ୟୁ କାହିଁଅଛି ମୋର୍ ।୪

ଧର୍ମ କର୍ମ ଗୁଣ ସକଳ ଭରିଛି
କର୍ତ୍ତବ୍ୟକୁ ସାକ୍ଷୀ ଦେଇ୍
ନିୟନ୍ତ୍ରିତ କରେ୍ ବିଶ୍ୱନିୟନ୍ତା ସେ
କର୍ମ'ଳ ଦେଇ୍ ଦେଇ୍ ।୫।



ଆତ୍ମା ସେହିପରି ବଦଳାଏ ଘଟ
ରୂପାନ୍ତର୍ ହୋଇହୋଇ
ଋତୁ ଯେଉଁ ପରି ଆସେ ଏ ଧରାକୁ
ନାମ ପରେ ନାମନେଇ। ୭।

ମରିନାହିଁ କେବେ ମରିବି ନାହିଁଟି
ଅଟେ ମୁହିଁ କାଳଜୟୀ
ଂରିଯାଅ ତୁମେ ଅଜଣା ପୁରୁଷ
ଅମୃତ ସନ୍ତାନ ମୁହିଁ ।୭।

********



# ବର୍ଷା

ଆଦ୍ୟ ଆଷାଢ଼ରେ କଳାମେଘ ରଜା
ବୁହାଏ ଅଶାନ୍ତ ଝଡ଼
ଶ୍ରାବଣୀ ନାୟିକା ଲୋତକ ଝରରେ
ବୃକ୍ଷ ହୁଏ କଡ଼ ମଡ଼ ।୧।
ଜନମାନସର ହାହାକାର ଧ୍ୱନି
ଗଗନ ପବନ କମ୍ପେ
ଧାରା ଶିରାବଣ ଆଷ୍ଫର୍ଦ୍ଧା ଦେଖିଣ
ଧରିତ୍ରୀ ମାଆ ସମ୍ପେ ।୨।
ମେଘ ରଜା କହେ ପ୍ରେୟସୀ ଗୋ ମୋର
ଢ଼ାଳ ନାହିଁ ଆଉ ଲୁହ
ହାତେ ହାତେ ଛନ୍ଦି ଚାଲ ଯିବା ଆମେ
ଯେଉଁ ଆଡ଼େ ନେବ ସୁଅ ।୩।
'ଟା ତରଣୀରେ ଅଝାଲ ବାନ୍ଧିଣ
ତରଣୀ ରେ ଯିବା ଭାସି
ଲେଉଟାଣି ପଥ ନାହିଁ ଦରିଆରେ
ଯାଉଥିବା ହସି ହସି।୪।
ଭାସି ଭାସି ଆମେ ପହଁଞ୍ଚିବା ଯାଇ
ପ୍ରିତିର ସପନ ପୁରେ
ବାଦ ଛେଦ ହିଂସା ଦ୍ୱେଷ ଦୀର୍ଘ ଶ୍ୱାସ
ଆଉ ନ ଥିବ କା ଘରେ ।୫।



ଭଲପାଇବାର ଛଳନା କରିଣ
ନ ଥିବ ସେଠାରେ ପ୍ରବଞ୍ଚନା
ନ ଥିବ ସେଠାରେ ଠକିବାରେ କେହି
ଧୋକ୍କା ସଙ୍ଗେ ଆଉ ପ୍ରତାରଣାଓ।
ଶାମୁକା ଗୋଟେଇ ସାଇଁଟିବା ସେଠି
ଆଶାର ଅନେକ ସ୍ୱପ୍ନ
ଢ଼େଉର ଦୋଳିରେ ଝୁଲି ଝୁଲି ପ୍ରେମ
ମଧୁକୁ କରିବା ପାନ।୭।
ମିଳନ ଲଗନେ ଶୁଣୁଥିବା କାନେ
'ଟା' ବଁଇଶୀର ସ୍ୱର
ଯେତେ ଦୁଃଖ ଯେତେ ଯାତନା ସବୁକୁ
ପାଖରୁ କରିବା ଦୂର ।୭।
ପ୍ରଣୟର ଗୀତ ଗାଉ ଥିବ ପକ୍ଷୀ
ସୁଦୂର ଝାଉଁ ବଣରେ
ମମତା ପିୟୂଷ ବାଣ୍ଟୁଥିବା ବସି
ସଖିଗୋ ସପନପୁରେ ।୮।
ଚପଳା ଚମକି କରିବ ପ୍ରକାଶ
ଅନ୍ଧାରୁ ଆଲୋକ ଶିଖା
ବିଶ୍ୱ ନିୟନ୍ତା ସେ କରୁଥିବେ ସେଠି
ଆମରି ଜୀବନ ରକ୍ଷା ।୯।
ତୁମେ କାନ୍ଦୁଥିବ ମୁଁ ବି କାନ୍ଦୁଥିବି
ଝରି ଝରି ହେବ ନଈ
ସେ ଝରଣା ଜଳେ ଯାଉଥିବା ଆମେ
ପ୍ରଣୟର ଗୀତି ଗାଇ ।୧୦ ।

********



# କଥୋପକଥନ

କୋଇଲି କହୁଛି କଜଳପାତିକୁ,
ବୁଝାଇଣ ସଖି କହ
ଆକାଶ ନେଳିଆ ଦରିଆ ନେଳିଆ,
କାହିଁକି ହୋଇଲା କୁହ ।୧।
(କଜଳପାତି) ଜାଣିନୁକି ସଖି ମରତପୁରର,
କଳଙ୍କ କାଳିମା କଥା
ଦୁଃଖ ଶୋକରୋଗ ଯନ୍ତ୍ରଣା ବ୍ୟାଧି ଓ
ବିଶୃଙ୍ଖଳ ରାଜନେତା ୨।
ନିଜର ଦୋଷକୁ ଅନ୍ୟ ମୁଣ୍ଡେଥାପି,
ଜନତା ସାଜିଛି ଭସ୍ମାସୁର
କେହିକାହା ସଙ୍ଗ ନଦିଅନ୍ତି ଆଜି,
ପଥ କରୁଛନ୍ତି ପରିଷ୍କାର ।୩।
କାହା ପାଖେ ନେଇ ଗୁହାରିକରିବ,
ରକ୍ଷକ ତ ଆଜି ଭକ୍ଷକ ସାଜେ
କାହାଶିରି କେହି ପାରୁନାହିଁ ଦେଖି,
ମହିଳା ମାରଣ ସବୁଠି ବାଜେ ।୪।
ଚାଲିଛି ଦେଶରେ ରାଜ ରାଜନୀତି,
କଇଁଅ ଯେପରି କାଢ଼ିଛି ବେକ
ମହିଳାଙ୍କୁ ନେଇ ମୁଣ୍ଡ ପରେ ଥୋଇ,
କିପରି ଡଳକୁ ଟୋପାଡ଼େ ଦେଖ ।୫।
ଧରମ ନାମରେ କରନ୍ତି ପ୍ରଚାର,
ନିଇତି ମାରନ୍ତି ବଡ଼ କୁହାଟ
ଅନ୍ତରାକ୍ଷେ ଥାଇ ଖୋଳୁଥାନ୍ତି ଛିଦ୍ର,
ଭରି ଲୁଚାଇଣ ଛଳକପଟ ।୬।



ଜଗତ ଯାକର ଦୁଃଖର କାଳିମା,
ବୋଳିଅଛି ଜଗାଦେହେ
ଆଉ ଯେତେ ଥିଲା ବିଷ ହୋଇଯାଇ,
ନୀଳବର୍ଣ୍ଣ ପାଲଟାଏ ।୭।
ସେ ବିଷରୁ କିଛି ପିଇଲେ ଶଙ୍କର,
ପାଲଟିଲା କଣ୍ଠନୀଳ
ବାକି ଯେତେ ଥିଲା ଧାତା ନେଇକରି,
ରଖିଲା ତା' କମଣ୍ଡଳ ।୮।
ସବୁତକ ବିଷ ତଳକୁ ଚାହିଁଣ,
ବିଧାତାଦେଲା ଯେ ଢାଳି
ଆକାଶ ବକ୍ଷରୁ ସମୁଦ୍ର ମଝିରେ,
ସବୁ ବିଷ ଗଲା ଝରି ।୯।
ଛିଟିକା ବାଜିଣ ଆକାଶଟା ଯାକ,
ଦିଶିଲା ନେଳିଆ ରଙ୍ଗ
ଆକାଶ ନେଳିଆ ସାଗର ନେଳିଆ,
ଦିଗବଳୟ ହେଲା ସାଙ୍ଗ ।୧୦।
କୋଇଲିକି କହେ କଜଳପାତିଟି,
ତୁ ମୋତେ ବୁଝାଇ କହ
ଆମେ ପକ୍ଷୀ ଜାତି ଉଡ଼ିଲେ ଆକାଶେ,
ପର କେ ଯୋଖିଲା କହ ।୧୧।
କୋଇଲି କହୁଛି ଶୁଣ ଆଲୋ ସଖୀ,
ପକ୍ଷୀ ସବୁଠାରୁ ଛୋଟ
ସେଥିପାଇଁ ପରା ଗଛକୁ କରିଛି,
ଉଦ୍ଭିଦ ଭିତରେ ମୋଟ ।୧୨।



ତଳେ ବୁଲୁଥିଲେ ଖାଇବେ ସମସ୍ତେ,

ଗୋଟି ଗୋଟି ମାରିକରି

ପର ଖଞ୍ଜି ଦେଲେ ଉଡ଼ିବେ ଆକାଶେ,

ପାରିବେନି କେହି ଧରି ।୧୩ ।

ଯୋଉ ଦେଶ ନାରୀ ଯୋଉ ବାଟେ ହେଉ,

ପଡୁଅଛି ନିତି ବଳି

ସେ ଦେଶରେ ଛୋଟ ପକ୍ଷୀଟି ହୃଦୟ,

କିଏ ସେ ପାରିବ କଳି ।୧୪।

ଗଛ ଅଗ ଡାଳେ ବାନ୍ଧିଥିଲେ ବସା,

କେହି ନ ପାରିବେ ଚଢ଼ି

ତଳେ କଲେ ବସା ଖାଇବେ ସମସ୍ତେ,

ମଣିଷଠୁ ଜନ୍ତୁ ମୋଡ଼ି ।୧୫।

ଦୁଃଖ ସୁଖ ହୋଇ ଦୁଇ ସଖି ଯାକ,

ଉଡ଼ିଗଲେ ଯେଝାବାଟେ

ହଳଦୀବସନ୍ତ ଜାଣିଥିଲା ପରି,

ପଛରେ ବାଳିଆ ପିଟେ ।୧୬ ।

********



# ଉତ୍କଳ ଦିବସେ

ଏପ୍ରିଲ୍ ପହିଲା ପବିତ୍ର ଦିନରେ,
ଘୋଷଣା କଲେ ବ୍ରିଟିଶ
ଗଢ଼ିଲେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ,
ଆମରି ଓଡ଼ିଶା ଦେଶ ।୧।
ସବୁ ଭାଷାଠାରୁ ଓଡ଼ିଆ ଭାଷାକୁ,
ସନମାନ ଦେବା ପାଇଁ
ଶବ୍ଦର୍ ଅର୍ଥକୁ ଚିରନ୍ତନ କରି,
ଅମର୍ ଗଲେଟି ହୋଇ ।୨ ।
କବି ରାଧାନାଥ କବି ଗଙ୍ଗାଧର,
କବି ଶ୍ରୀ ନନ୍ଦ କିଶୋର
ଗୋପବନ୍ଧୁ ସଙ୍ଗେ ନୀଳକଣ୍ଠ ଦାଶ,
ଆଉ କବି ହରିହର ।୩।
ଦିନବନ୍ଧୁ ସଙ୍ଗେ ଜଗନ୍ନାଥ ଦାସ,
ଆଉ ଭଞ୍ଜ ଉପଇନ୍ଦ୍ର
ଓଡ଼ିଆ ଭାଷାର୍ ଗର୍ବ ଗଉରବ,
ମର୍ଯ୍ୟାଦା ରଖି ଅକ୍ଷୁର୍ଣ୍ଣ ।୪ ।
ବେଦ ବେଦାନ୍ତ ଓ ଗ୍ରନ୍ଥାବଳୀ ସଙ୍ଗେ,
କବିତା ଲେଖିଣ କବି
ଗଳ୍ପ ଉପନ୍ୟାସ ପ୍ରବନ୍ଧ ଲେଖିଣ,
ରଖି ଯାଇଛନ୍ତି ଛବି ।୫।
କୂଳବୃଧ ମଧୁସୂଦନ ସାଙ୍ଗରେ,
ରାମଚନ୍ଦ୍ର ଭଞ୍ଜଦେଓ
ରାଜା କୃଷ୍ଣଚନ୍ଦ୍ର 'ବୀରମୋହନ,
ଗୌରୀଶଙ୍କର ରାୟ ।୬ ।



ବଇକୁଣ୍ଠନାଥ ଗୋପାଳବଲ୍ଲଭ,
ନୀଳମଣି ବିଦ୍ୟାରତ୍ନ
ଦାମୋଦର୍ ରାମଶଙ୍କର୍ ମିଶ୍ରଣ,
କରିଛନ୍ତି କେତେ ଯତ୍ନ ।୭।
ଜନ୍ମଭୂମିର୍ ସୁରକ୍ଷା ପାଇଁକି,
ମିଶ୍ରଣ ବିଚିତ୍ରାନନ୍ଦ,
ଉତ୍କଳ ଓଡ଼ିଶା ଜନ୍ମ ନେଇଥିଲା,
ମୁକ୍ତି ପାଇ ପରାଭବ ।୭ ।
ସାଧୀନତା ସଂଗ୍ରାମରେ୍ ଝାସ ଦେଇ,
ଅମର୍ ହେ ବୀରକର୍ମୀ
ଦୃଢ଼ ଚିନ୍ତା ନିଷ୍ଠା ଜାତିପ୍ରୀତି ଦେଖି,
ିରଙ୍ଗି ଗଲେ୍ ସରମି ।୮ ।
ସମର୍ ଭୂଇଁ ରେ୍ କରୁଥିଲେ୍ ଯୁଦ୍ଧ,
ଆମ ଓଡ଼ିଆ ପାଇକ
ଜାଭା ସୁମାତାରା ଯାଉଥିଲେ୍ ଦିନେ,
ଆମରି୍ ଦେଶ ସାଧବ ।୯।
କୋଣାରକ ଶିଳା ଗଢ଼ିଥିଲେ୍ ଦିନେ,
ଆମରି୍ ଦେଶର୍ ଶିଳ୍ପୀ
ଗଙ୍ଗାଠାରୁ ଗୋଦାବରୀ ଯା ପ୍ରତିଭା
କେହି ନ ପାରିବେ କଳ୍ପି ।୧୦ ।
ଲେଖିବା ଓଡ଼ିଆ କରିବା ଓଡ଼ିଆ,
ସମସ୍ତ ଭଉଣୀ ଭାଇ
ଜାବଥିବା ଯାଏ ଭାଷା ଟେକଲାଗି,
ମଥା ନୁଆଁଇବା ନାହିଁ ।୧୧।
ଆମେ ସବୁ ଅଟୁ ଉତ୍କଳ ସନ୍ତାନ,
ରଖିବା ଦେଶର୍ ମାନ
ଓଡ଼ିଆ ଭାଷା କୁ କରିବା ସୁଦୃଢ଼,
ଓଡ଼ିଆ ଆମର୍ ପ୍ରାଣ ।୧୨।

*********



# ବାସନ୍ତୀ ରଙ୍ଗ (ହୋଲି)

ଫଗୁଣ ମାସରେ ଦୋଳ ଯାତରା ଲୋ,
'ଗୁ ଖେଳିବାକୁ ମନ
ଦୋଳରେ ବସିଣ ରାଧା ଗୋବିନ୍ଦ ଲୋ,
ଝୁଲୁଛନ୍ତି ରାତିଦିନ ।୧ ।
ହୋଲି ଖେଳଦିନ ସମସ୍ତେ ସମାନ,
ନାହିଁ ଜାତି ଜାତି ଆଣ
ବାସନ୍ତୀ ରଙ୍ଗରେ ରଙ୍ଗେଇ ହୋଇଣ,
ଆନନ୍ଦ ସବୁରି ମନ ।୨ ।
ବସନ୍ତେ ବାସନ୍ତୀ ନ ହୋଇଲେ ମନ,
କଣ୍ଟକିତ ହେବ ଜନ ଜୀବନ
ଆତ୍ମକ୍ରାନ୍ତି ଆଣେ ମନରେ ବାସନ୍ତୀ,
ବେଦ ବେଦାନ୍ତ ଜୀବନ ଦର୍ଶନ ।୩ ।
ଅନ୍ୟାୟ ଅନୀତି ସହୁଥିବା ଯଦି,
ଭୁଲୁଣ୍ଠିତ ହେବ ଜନ ଜୀବନ
ସୁପ୍ତ ମନୁଷ୍ୟଙ୍କୁ ଜଗାଇବ ଯଦି,
ମୃତ ଶରୀରେ ବି ଆସିବ ପ୍ରାଣ ।୪ ।
ବିଚାର ବସନ୍ତ ପ୍ରାଣରେ ଭରିବା ,
ସମାଜରୁ ପ୍ରତି କୋଣରୁ କୋଣେ
ଶଉର୍ଯ୍ୟ ବୀର୍ଯ୍ୟର ସାହାସ ଭରିବା,
ଜନ ସମାଜର କାନରୁ କାନେ ।୫ ।
ଆତ୍ମ ସାଭିମାନ ହୋଇଛି ପତନ,
ସଂସ୍କାର ସହିତ ଦେବ ସଂସ୍କୃତି
ନୁହେଁ ସୁରକ୍ଷିତ ଏ ଜନ ସମାଜ,
ଦେଶକୁ ଗ୍ରାସିଛି ଯେତେ ଅନୀତି ।୬ ।



ଚିନ୍ତା ଚେତନାରେ ଭୟ ଗ୍ରାସ କରେ,

ମନ ହୋଇ ଯାଏ କାଆ ପୁରୁଷ

ବ୍ୟକ୍ତି ଆଉ ରାଷ୍ଟ୍ର ମୁଠା କଲେ ହାତ,

ବଢ଼ିଯିବ ଦେଶ ଯଶ ପୌରୁଷ ।୭ ।

ଉନ୍ନତି ପାଇଁକି କରିଲେ ସାଧନା,

ହୋଇଯିବା ଜଣେ ଜଣେ ସାଧକ

ଯୁଦ୍ଧ ପାଇଁ ଯେବେ କରିବା ଆହ୍ୱାନ,

ମନ ହୋଇଯିବ ଦେଶ ସୈନିକ ।୮ ।

ସମାଜ ସଂସ୍କୃତି ରକ୍ଷଣ ବେକ୍ଷଣେ,

ସମାଜ ହୋଇବ ଦିନେ ସକ୍ଷମ

ବସନ୍ତେ ବାସନ୍ତୀ ରଙ୍ଗ ବୋଳି ହୋଇ,

ପଲ୍ଲବିତ ହେବ ଆମ ଜୀବନ ।୯ ।

ଆହେ ରାଧା କୃଷ୍ଣ ପବିତ୍ର ଚେତନା

ଭରିଦିଅ ତନ ମନ ଓ ପ୍ରାଣ,

ନାଲି ନେଳି ରଙ୍ଗେ ହୋଲି ଖେଳ ଖେଳି,

ଘୁଞ୍ଚିଯାଉ ଦ୍ୱେଷ ଜାତି ଜୀବନ ।୧୦ ।

*********



# କିଏ ସେ

କୋଉଠି ଥାଏ କୋଉଠୁ ଆସେ,
ଯେଉଁଠି ଥାଉ ପାଖକୁ ଆସେ ।
ତୁମେ ତାକୁ ଡାକ କି ନ ଡାକ
ପାଖରେ ବସିବ ଆସି ଆଖିର ପଲକ ।
ନିଶବ୍ଦରେ ଗାଉଥିବ ଅପୂର୍ବ ସ୍ୱରରେ,
ଅନୁଭବ କରୁଥିବ ତୁମେ ତା' କର ସ୍ପର୍ଶରେ
ତା' ଉପସ୍ଥିତିରେ ଯେମିତି ଲାଗୁଥିବ,
ଜାଣି ମଧ୍ୟ କିଛି ଜାଣିପାରୁ ନଥିବ ।
ଘର ବାହାର ଅଗଣା ଉଠୁଥିବ ତାତି,
ସତେ ଅବା ବୋହୁଅଛି
ରକତର ଆବାହନୀ ଶକ୍ତି ।
ତା' ଓଠରେ ଲାଗିଥିବ ମୁଚୁକୁନ୍ଦ ହସ,
ସତେ ଅବା କରୁଅଛ ତୁମେ ପରିହାସ ।
ଛୁଇଁଦେଲେ ତୁମ ଦେହ ଦୁଇ ଆଖିଦେଇ,
ବୋହିଯିବ କେତେ ଜଳ ପାଲଟିବ ନଇଁ ।
ସତେ ଅବା କରୁଅଛି ସଁ। ,
ଯହିଁ ଯେତେ ଅଛି ଆବର୍ଜନା
ଯେତେ ତାକୁ ଦୂରେ ଦିଅ ଠେଲି,
ପାଖେ ଥିବ ନଶୁଣିବ ମନା ।।



ଆଣିଥିବ ଯେତେ ସାଙ୍ଗସାଥୀ,
ପାଖେ ତୁମ କରୁଥିବେ ମେଳି
କେହି ନୁହେଁ ଦୁଃଖ ନାମ ତାର,
ସୁଖ କଥା ହେଉଥିବ ଝୁରି ।
ଲାଗିଥିବ କାଳିସୀ ପରାଏ,
ପାଖ କେବେ ନ ଯିବ ଛାଡ଼ି
ଯେତେଦିନ ଥିବ ତୁମ ପାଶେ
ପାଶେ ତୁମ ପଶିବ ମରୁଡ଼ି ।
ଥୁଣ୍ଟାଗଛେ ଜହ୍ନାପଲ୍ ଖେଳୁଥିଲାପରି,
ଚିରକାଳ ହୋଇଥିବ ଚିର୍ ସହଚରୀ ।
ଖୋଜୁଥିବ ସମୟକୁ କେତେବେଳେ
ଲଗେଇବ ନିଆଁ
ବେଳକାଳ ଦେଖି ଦେହେ
ମାଡ଼ି ଦେବ ଚିଆଁ ।
ତଥାପି ବି ଶୁଣାଯାଏ
ସର୍ ଅନନ୍ତର୍ ଅନ୍ତର୍ ଭିତରୁ
ସେ ଅବ୍ୟକ୍ତ ଶବ୍ଦ ହୁଏ ଗୁଞ୍ଜରିତ
ମର୍ତ୍ତ୍ୟବାସୀ ଅବୁଝା କାନରେ
ଧୈର୍ଯ୍ୟ ରଖି ଏ ମଣିଷ,
ଚାପିଦିଏ ସମୁଦ୍ର ପରାଏ
ଢେଉ ପରି ହଉଥାଏ ମାଡ଼
ମଣିଷର ହୃଦୟ ବେଳାରେ ।

*********



# ପଞ୍ଜୁରୀ

ଯେ ଫୁଲ୍ ଫୁଟିଚି ଆଜି,

ଗନ୍ଧ କାଲି ନିଶ୍ଚେ ଯିବ ଝରି

ଯେଉଁ ବାକ୍ୟ ଯାଅ ଥରେ କହି

କେବେ ସେତ ଆସେ ନାହିଁ ଫେରି ।୧ ।

ଯେଉଁ ନଦୀ ଯାଉ ଥାଏ ବହି

ବାଟେ ଘାଟେ ଯାଏ କେବେ ହଜି

ଦେଖାଦିଏ ଉଜାଣି ସୁଅରେ

ବର୍ଷା ସାଙ୍ଗେ ଥାଏଟି ନିମଜ୍ଜି ।୨ ।

ଜୀବନରେ ଆସେ ଝଡ଼

ପିଟୁ ଥାଏ ଯନ୍ତ୍ରଣାର ଝଞ୍ଜା

ଅକାଶର ଜ୍ୟୋଛନା କିରଣୁ

ପ୍ରେମୀ ନିତି କରୁଥାନ୍ତି ମଜ୍ଜା ।୩ ।

ସକାଳର ସୂର୍ଯ୍ୟ ନିତି ଉଏଁ

ଅସ୍ତ ଯାଏ ଗୋଧୂଳି ସମୟେ

କାନ୍ଦିବାରେ ଲାଭ ନାହିଁ କିଛି

ଲୁଚିଯାଏ ସ୍ମୃତିର ପରାଏ ।୪ ।

ଆଖି ବୁଜିଲେ ଅନ୍ଧାର

ଖୋଲିଦେଲେ ସତେ ଅବା ସୂର୍ଯ୍ୟ ଆସେ ଉଇଁ

ସ୍ମୃତି ଫୁଲ ପାଖୁଡ଼ାକୁ ଖୋଲୁଥିବ ଯେତେ

ଆପଣାର ଅସ୍ତିତ୍ୱକୁ ଦେବଟି ହଜାଇ ।୫ ।



ଯେତେ ତାକୁ ଝୁରୁଥିବ ହରଣ ଗୁଣନ ହୋଇ
ଭାଗ ଶେଷ ରହୁଥିବ ବାକି
ମନ ସାଜେ ମରୁଭୂମି ହୃଦୟଟି ଫୁଲବନ
ଜୀବନର ଆଇନାଟି ଯାଏ ସିନା ଭାଙ୍ଗି ।୨।

ସିନା ଭାଙ୍ଗି ସପ୍ନପକ୍ଷୀ ଯାଏ ଉଡ଼ି
ମୋ ମନର ସୁନା ପଞ୍ଜୁରୀରୁ
ମନ ପକ୍ଷୀ ଖୋଜେ ମୁକ୍ତି
ଏ ସଂସାର ଲୌହ ପଞ୍ଜୁରୀରୁ ।୨।

ଦୁଃଖ ସୁଖ ଇଚ୍ଛା ସବୁ ମାରନ୍ତି ଲହଡ଼ି
ମୋ ଦୁନିଆ ବେଳାଭୂମିପରେ
ମତେ ଲାଗେ ମୋ ନିଜସ୍ୱ ସାମ୍ରାଜ୍ୟରେ
ମୁଁ ଏକା ସାମ୍ରାଜ୍ଞୀ ସେମାନଙ୍କୁ ନିତି ଧକ୍କା ମାରେ ।୮।

*********



# ଅଗଷ୍ଟ ପନ୍ଦର

ସ୍ୱାଧୀନତା ଦେଶେ ପତାକା ଆକାଶେ
ଉଡୁଅଛି ହୋଇ 'ର'ର
ଦେଶବାସୀ ମିଶି ସମ୍ମାନ ଜଣାଇ
ପାଳୁଛନ୍ତି ଅଗଷ୍ଟ ପନ୍ଦର ।୧ ।
ଯୁଗ ଓଲଟିଛି ସବୁ ବଦଳିଛି
ଭଲ କଥା ହେଲା ବିଲିବିଲା
ଡାହାମିଛ କହି ଭଲ ସେ ହୋଇଲା
ସତ ଯେ କହିଲା ନିଶ୍ଚେ ମଲା ।୨ ।
ଧର୍ମ ନିରପେକ୍ଷ କହନ୍ତି ଏ ଦେଶ
ରାମ ରାଜ୍ୟ ପଡ଼େ ଡ଼କା ହକା
ଶାସନ ଚଳାନ୍ତି ମନ୍ତ୍ରୀ ରାଜନେତା
ପରସ୍ପର ହୋନ୍ତି ବଡ଼ ସଖା ।୩ ।
କଳାକୁ ଧଳା ଯେ କରେଇ ପାରିଲା
ସେତ ବଡ଼ ଲୋକ ନିଶ୍ଚେ ହେଲା
କରିପାରେ ଯିଏ ଧୋକ୍କା ଟାଉଟରି
ପ୍ରମାଣେନ ତାର ନଷ୍ଟେ ହେଲା ।୪ ।
ନର୍ମଳ ଶାସନ ଚାଲୁଥାନ୍ତା ଯଦି
ସୁଖେ ଦିନ ଯାଉଥାନ୍ତା ବିତି
ନ୍ୟାୟଦଣ୍ଡାଧୀଶ ବୋଲାନ୍ତି ସଭିଏଁ
ଧରମ କୁ ଆଖି ମାରି ନିତି ।୫ ।
ଚୋରି ଡ଼କାୟତି ଧର୍ଷଣ କର୍ଷଣ
ଚାଲିଛି ଲୁଟତ ରାଜ ଆଜି
ଗୁଣ୍ଡା ମଦୁଆଙ୍କ ଚାଲିଛି ଶାସନ
ସବୁଠି ଚାଲିଛି ଆତଙ୍କ ବାଜି ।୬ ।



ନ ଖାଇ ନପିଇ ଗରୀବ ବାପୁଡ଼ା
ନିଜ ପିଲା ନେଇ ଅନ୍ୟକୁ ବିକେ
ଅନାହାର କେହି ନ ସହି ପାରିଣ
ନିଜକୁ ମାରନ୍ତି ମରନ୍ତି ଥୋକେ ।୭ ।
କାହା ପାଖେ ନେଇ ଗୁହାରୀ କରିବ
ରକ୍ଷକ ତ ଆଜି ଭକ୍ଷକ ସାଜେ
କାହା ସଙ୍ଗେ କା'ର ଯତିପାତ ନାହିଁ
ମୃତ୍ୟୁର ନାଗରା ସବୁଠି ବାଜେ ।୮ ।
ପରସ୍ପରେ ଦୋଷ ଲଦି ହେଉଥାନ୍ତି
ଜନତା ସାଜିଛି ଭସ୍ମାସୁର
ଆସଗୋ ସମସ୍ତେ ହୋଇଣ ଏକାଠି
ଏ ପଥ କରିବା ପରିଷ୍କାର ।।
ନିଇତି ସଂବାଦ ପେଟରା କହୁଛି
କାହା ବୋହୂ ଝିଅ ପୋଡ଼ି ମଲା,୦
କାହା ଝିଅ ଚୋରା ପିରତି କରିଣ
ନିଜ ପୁଅ ପତିଙ୍କି ମାଇଲା୧୧।
ମଠମନ୍ଦିରରେ ନାହାନ୍ତି ଠାକୁର
ସବୁଠି ଚାଲିଛି ଗଞ୍ଜେଇ ମାଡ଼
ଏହି କଥା କିଏ କହିବ କାହାକୁ
କାହାରି ଜିଭରେ ନାହିଁ ହାଡ଼ ।୧୨ ।
ଦେଶର ପ୍ରଗତି ଦେଶର ଉନ୍ନତି
ଗୀତ ତାଳେ ବାଜା ସାଙ୍ଗରେ ନାଚ
ଖଜୁରୀ ଗଛର କି ଗୁଣ ଗାଇବି
ସେ ତ ମୂଳୁ ପାହାଚ ପାହାଚ ।୧୩ ।



ବିପଦ ଆପଦ ଆସେତ ସଭିଙ୍କୁ
(ତଥାପି) ପଡ଼ିଶାକୁ ହେଲେ ଅଡ଼ିଶା ଭାସେ
କେହି କାହା ଲୁହ ପୋଛିବା ତ ଦୂର୍
ଯିଏ ଯାହା ପରେ ଶତୃତା ସାଧେ ।୧୪ ।
କପାଳକୁ ମାରି କାନ୍ଦିଲେ କି ହେବ
ଯୁଗତ ହୋଇଛି ସେଇମିତି
ଏ ପତାକା ତଳେ କରିବା ଶପଥ
ସୁଧାରିବା ଆମ ରାଜନୀତି ।୧୫ ।
ଅଜ୍ଞାନୀ ମଣିଷ ପାରୁନାହିଁ ବୁଝି
ନିୟତି ସାଙ୍ଗରେ ଖେଳୁଛି ଖେଳ
କିଏ କାହା ସଙ୍ଗେ ରହୁଛି ଜଡ଼େଇ
ଫିଙ୍ଗି ଦେଇ ଦେହୁ ସାଧନ ଖୋଳ ।୧୬।

*********



# ଅବୁଝା

ହାଡ଼ ମାଂସ ରକ୍ତେ ଗଢ଼ା ଏ ମାଟି ଶରୀର,
ମାଟି ଦେହେ ବସିଥିଲା ୂଲର୍ ସହର
ବାସନାରେ କମ୍ପୁଥିଲା ମନ ତଳ ଘର,
ଓଠ ତଳେ ନାଚୁଥିଲା ସପନ ମୟୂର୍ ।
ନିବିଡ଼ ନିଶିରେ ବସି ପ୍ରିତିପୂର୍ଣ୍ଣା ନାରୀ,
ବସି ବସି ଲେଖୁ ଥିଲା ଅଭୂଲା ସାୟରୀ ।
ବିନା ଜନ୍ମେ ଖେଳୁ ଥିଲା ଜ୍ୟୋସ୍ନନାର୍ ପାର୍ବଣ
ବିନା ତାରେ ହସୁଥିଲା ୂଲର୍ 'ଗୁଣ ।
ବର୍ଷା ନାହିଁ ଶୀତ ନାହିଁ
ଥରୁ ଥିଲା ତା ଅନ୍ତ କରଣ ।
ସମୁଦ୍ରର୍ ସଭା ନାହିଁ ହୃଦୟରେ
ଢେଉ୍ ପିଟେ ପ୍ରୀତିର୍ ଶ୍ରାବଣ ।
ସମୟକୁ ତାଳ ଦେଇ ସମତାର୍ ହୋଇ
ବୟସର୍ ନଈ ତା'ର୍ ଯାଉଥିଲା ବହି ।
ପଥ ମଧ୍ୟେ କାଟ ଶୋଷି ଶୁଖି ଜଳଧାରା
ଜଳ ସଙ୍ଗେ କ୍ଷେପିନେଲା ଯେତେ ବାଲିଟାରା ।
ଜଣା ନାହିଁ ଶୁଣା ନାହିଁ ଆସିଲା ଗୋଧୂଳି
ଛାଇ ଆଲୁଅ ସାଙ୍ଗରେ ଖେଳି ଲୁଚକାଳି ।
କ୍ଲାନ୍ତି ଅଛି ନିଦ ନାହିଁ ହୁଏ ସେ ବାଉଳି
ଭୋକ ନାହିଁ ଶୋଷଅଛି ହୁଏ ସେ କାଉଳି ।
ରାତିର୍ ଅନ୍ଧାରେ ନିତି ଖେଳେ ଜୁଆଖେଳ
ହାରିବାରେ ଦୁଃଖ ନାହିଁ ଜିଣିବାରେ ଖୁସିରେ ବଉଳ ।



ବୟସ ଓ ସମୟର୍ ଜୁଆଖେଳ ଯାଉଅଛି ସରି
ପ୍ରତିପୂର୍ଣ୍ଣା ପରୀ ମୁଖ ଯାଉଛି ମଉଳି ।।
ବଦଳି ଯାଉଛି ତାର୍ ଜୀବନର୍ ନାଆ
ଉଚ୍ଚେ ଟେକି ଙ୍କିଦିଏ ମହାକାଳ ବାଆ ।
ଠାକୁରଙ୍କୁ କରି ଆଶା ପଶିଛି ଶରଣ
ଜାଳେ ନିତି ଘିଅଦୀପ ନମାନି ବାରଣ ।
ବସିଛନ୍ତି ଦେବ ଦେବୀ ବେଦୀର୍ ଉପରେ
ପୂଜା ଅରଚନା ହୁଏ ବିବିଧ ପ୍ରକାରେ ।
ମନର୍ ଦେଉଳେ ଆଜି ଚନ୍ଦନର୍ ଛୁଆଁ
ତିମିର୍ ତୀର୍ଥେ ଖେଳୁଛି ସପନର୍ ଜୁଆ ।
ଅଧା ଜଳା ସଳିତାଟି ଯାଏ ଜଳି ଜଳି
ଆତ୍ମଘାତୀ ଆୟୁଷରେ ପତଙ୍ଗର୍ ପରି ।
କୀଟଦ୍ରୁଷ୍ଟ ଜୀବନଟି ଯାଏ ସରି ସରି
ସବୁରିକି ଆପଣାଏ ବୋରଝାଞ୍ଜି ପରି ।
ନଟେଇର୍ ସୂତା ପରି ଅପେକ୍ଷାରେ ରତ
କେତେବେଳେ ଛିଡ଼ି ହେବ ଧୂଳି ଧୂଷରିତ ।
ସବୁଅଛି କିଛିନାହିଁ ଏଇ ତ ଜୀବନ
ଭାଗ୍ୟହୀନ କିଏ ହୁଏ କିଏ ଭାଗ୍ୟବାନ ।

*********



# ବୃଦ୍ଧ ପ୍ରଭୁ

ବୃଦ୍ଧ ପ୍ରଭୁ ତୁମେ ତ ଦେଖୁଛ,
ନିତି ଆଜି ଏ ଭଙ୍ଗା ମନକୁ
କିବା ଦେଖି ନ ଦେଖିବା କର୍ ଅଭିନୟ,
ଝରୁଥିବା ଆଖିର୍ ଲୁହକୁ ।୧ ।
ମାଆଟିଏ ଭବିଷ୍ୟତ ଦାୟାଦର,
ଅକାରଣେ କରୁଥାଏ ଅବିରନ୍ତ ଚିନ୍ତା
ମାଆ ବୋଲି ଭୁଲିଯାଏ ତା' ଜୀବନ ରଙ୍ଗୋଲି ସପନ
ଭିଜାଇଣ ତା' ଦେହରେ ଅନବଦ୍ୟ ବ୍ୟଥା ।୨ ।
କଟୁଥିଲା ଦିନ ଯାର୍ ଦିନେ
ଶାନ୍ତସ୍ନିଗ୍ଧ ପ୍ରୀତିର୍ ଝରରେ
ରାତିଯା'ର୍ ଯାଉଥିଲା ପାହି
ବାସ 'ଲ୍ ବାସନା ବିଭୋରେ ।୩ ।
ସବୁଆଜି ମୂଲ୍ୟହୀନ ନାହିଁ ଶ୍ରଦ୍ଧା,
ସମ୍ମାନ ଓ ଆସ୍ଥ ମର୍ଯ୍ୟଦାର୍
ସେ 'ଗୁଣ ଯାଇଅଛି ହଜି
ପାଣିଚିଆ ଦିଶଇ ଅବୀର୍ ।୪ ।
ନ ଡାକିବି ସ୍ନେହ ଶ୍ରଦ୍ଧା ପଡ଼ଇ ବିଛୁଡ଼ି
ମ୍ଳାନ ଦିଶେ ଜୋଛନା କିରଣ
ଏ ସଂସାରେ ନିର୍ଯ୍ୟାତିତ ନିକ୍ଷେପିତ ନାରୀ ଆଜି
ନିସ୍ୱାର୍ଥରେ ତ୍ୟାଗ କରି ନିତି
ଏ ଜୀବନ କରିଛି ବରଣ ।୫ ।



ସମସ୍ତେ ସବୁଜାଣି ନ ଜାଣିବି ହୁଅନ୍ତି ଅଜଣା

ତା' ପଣତ ଶୂନ୍ୟ କରି୍ ସ୍ନେହ କାଙ୍ଗାଳର୍ ମନ,

ଖୋଜିବୁଲେ୍ କିଏ ସେ ଆପଣା ।୭ ।

ରକ୍ତ ମାଂସ ଦେଇ୍ ଯା'କୁ ଗଢ଼ିଛି ତା' ହାତେ

ଅଯଥାରେ୍ ପ୍ରଶ୍ନ ସବୁ ଦିଅନ୍ତି ଅଡାଢ଼ି

ସ୍ୱାର୍ଥଲାଗି ଆଉ୍ କେତେ ଚିତାନଳେ

ଜାଳିବାକୁ ବସନ୍ତି ସଜାଡ଼ି ।୭।

ଜୀବନରେ୍ ଆସେ ନିଃସଙ୍ଗତା

ଲାଗେ ତାକୁ ଏକା ଏକା

ଅଖୋଜା ଅଲୋଡ଼ା

କ୍ଳାନ୍ତ ଶ୍ରାନ୍ତ ଓ ବିବର୍ଣ୍ଣ ଦୁନିଆରେ୍

ସମସ୍ତେ ବେଆଡ଼ା ।୮।

*********



# ବସନ୍ତେ ବାସନ୍ତୀ

ବାରମାସେ ତେର ପର୍ବ ଭିତରୁ
ହୋଲିପର୍ବ ଭାରତୀୟ ସଂସ୍କୃତି
ରଙ୍ଗ ଖେଳେ ଅନ୍ତର୍ଚେତନା ଜାଗଇ
ଅନ୍ତରେ ପ୍ରଦାନ କରାଇ ପ୍ରୀତି ।୧।
(ହୋଲି) ଯଜ୍ଞେ କୁସଂସ୍କାର ଆହୁତି ଦେବାକୁ
ରାଧା କୃଷ୍ଣ କରିଥାଆନ୍ତି ହଟ
ପରସ୍ପର ମଧ୍ୟେ ଭେଦଭାବ ଭୁଲି
ପ୍ରେମ ସଦଭାବ କରେ ପ୍ରକଟ ।୨।
ଏହି ହୋଲି ଦିନ ଭଗବାନ ଶିବ
କ୍ରୋଧେ କରିଥିଲେ କାମ ଦହନ
ଭକ୍ତ ପ୍ରହଲ୍ଲାଦ ଧରିଣ କୋଳରେ
ହୋଲିକା ରାକ୍ଷସୀ ଗଲା ଜଳିଣ ।୩।
ରାଗ ହିଂସା ଦ୍ୱେଷ ଅହଂମିକା ଗୁଣ
ସବୁ ଗଲା ଜଳି ଅଗ୍ନି ଭିତରେ
ହୋଲି ଅର୍ଥ ଯାହା ଯାଇଅଛି ବିତି
ଭୁଲିଯାଅ ସବୁ ବର୍ତ୍ତମାନରେ ।୪।
ଆନନ୍ଦର ରସ ପାଇବାକୁ ହେଲେ
ପଛକୁ ନ ଚାହିଁ ଆଗକୁ ବଢ଼
ଆତ୍ମ ପ୍ରକାଶର ଶରଣରେ ରହି
ପ୍ରେମରସମୟେ ଜୀବନ ଗଢ଼ ।୫।



ବୈଶାଖ ଜ୍ୟେଷ୍ଠରେ ସୂର୍ଯ୍ୟଙ୍କ କିରଣ
ଶରୀରକୁ କରିଦିଏ ଦୁର୍ବଳ
ଶରୀରର ରୋଗ ପ୍ରତିରୋଧ ଶକ୍ତି
ଆଣିଦିଏ ଏହି ହୋଲିର ଖେଳ ।୬ ।
ବୈଦିକ ଯୁଗରେ ମୁନି ଋଷିମାନେ
ଫୁଲରଙ୍ଗେ ଖେଳୁଥିଲେଟି ହୋଲି
କଳିଯୁଗେ ସାତଭାଇ ଆଖଡ଼ାରେ
ରାସାୟନିକ ରଙ୍ଗେ ଛୁଅନ୍ତି ବୋଲି ।୭ ।
ବସନ୍ତେ ବାସନ୍ତୀ ନହୋଇଲେ ମନ
କଣ୍ଟକିତ ହେବ ଜନଜୀବନ
ଆତ୍ମକ୍ରାନ୍ତି ଆଣେ ମନରେ ବାସନ୍ତୀ
ବେଦ ବେଦାନ୍ତ ଜୀବନ ଦର୍ଶନ ।୮ ।
ଅନ୍ୟାୟ ଅନୀତି ସହୁଥିବା ଯଦି
ଭୁଲୁଣ୍ଠିତ ହେବ ଜୀବନ ଧନ
ସୁପ୍ତ ମନୁଷ୍ୟକୁ ଜଗାଇବ ଯଦି,
ମୃତ ଶରୀରେ ବି ଆସିବ ପ୍ରାଣ ।୯ ।
ବିଚାର ବସନ୍ତ ପ୍ରାଣରେ ଭରିବା,
ସମାଜର ପ୍ରତି କୋଣରୁ କୋଣେ
ଶଉର୍ଯ୍ୟ ବୀର୍ଯ୍ୟର ସାହାସ ଭରିବା,
ଜନ ସମାଜର କାନରୁ କାନେ ।୧୦ ।
ଆତ୍ମ ସାଭିମାନ ହୋଇଛି ପତନ,
ସଂସ୍କାର ସହିତ ଦେବ ସଂସ୍କୃତି
ନୁହେଁ ସୁରକ୍ଷିତ ଏ ଜନ ସମାଜ,
ଦେଶକୁ ଗ୍ରାସିଛି ଯେତେ ଅନୀତି ।୧୧ ।
ଚିନ୍ତା ଚେତନାରେ ଭୟ ଗ୍ରାସ କରେ,
ମନ ହୋଇ ଯାଏ କାଆପୁରୁଷ
ବ୍ୟକ୍ତି ଆଉ ରାଷ୍ଟ୍ର ମୁଠା କଲେ ହାତ,
ବଢ଼ିଯିବ ଦେଶ ଯଶ ପୌରୁଷ ।୧୨ ।



ଉନ୍ନତି ପାଇଁକି କରିଲେ ସାଧନା,

ହୋଇଯିବା ଜଣେ ଜଣେ ସାଧକ

ଯୁଦ୍ଧ ପାଇଁ ଯେବେ କରିବା ଆହ୍ୱାନ,

ମନ ହୋଇଯିବ ଦେଶ ସୈନିକ ।୧୩।

ସମାଜ ସଂସ୍କୃତି ରକ୍ଷଣ ବେକ୍ଷଣେ ,

ସମାଜ ହୋଇବ ଦିନେ ସକ୍ଷମ

ବସନ୍ତେ ବାସନ୍ତୀ ରଙ୍ଗ ବୋଲି ହୋଇ,

ପଲ୍ଲବିତ ହେବ ଆମ ଜୀବନ ।୧୪।

ଆହେ ରାଧାକୃଷ୍ଣ ପବିତ୍ର ଚେତନା

ଭରିଦିଅ ତନ ମନ ପ୍ରାଣ

ନାଲି ନେଳି ରଙ୍ଗେ ହୋଲି ଖେଳ ଖେଳି,

ଘୁଞ୍ଚିଯାଉ ଦ୍ୱେଷ ଜାତି ଜୀବନ ।୧୫।

*********



# ହେମନ୍ତ ମିଳନକୁ ପଦେ

ପବିତ୍ର ତିଥିରେ ଡ଼ାକୁଅଛି ଆଜି
ସାହିତ୍ୟ ସଂସଦ ଗୋଦାବରୀଶ
ହେମନ୍ତୀ ମିଳନେ ସରଚିତ ବାଢ଼ି
ପରଷିବ ଦେବେ ପଦ୍ୟ ପିୟୁଷ ।।
କବିତା କଲ୍ଲୋଳେ ଛନ୍ଦାୟିତ ହୋଇ
ଆତ୍ମହରା ହେଉ ଆମରି ମନ
ପ୍ରକୃତି ସୌନ୍ଦର୍ଯ୍ୟେ ହେମନ୍ତର ସ୍ପର୍ଶେ
ପଲ୍ଲବିତ ହେଉ ସିକ୍ତ ଜୀବନ ।୨ ।
ହେମନ୍ତୀ ଗୋ ତୁମେ ଆସିଛ ଧରାକୁ
ଧୀରେ ଧୀରେ କୁନି ପାଦକୁ ଥାପି
ଗରମ ପୋଷାକ ରଖିଅଛି ଧରା
ତୁମ ପଥଧାରେ ଦେବାକୁ ସଂପି ।୩ ।
ତୁମ ପାଦ ପଦ୍ମ ପଖାଳିବା ପାଇଁ
ଶିଶିର କଣିକା ରହିଛି ଟାକି
କୁସୁମ ଫୁଲରେ ମାଳ ଗୁନ୍ଥିଅଛି
ଗଳାରେ ଦେବାକୁ ସୁମନ ସଖି ।୪ ।
ଧରମ ମାସରୁ ଜଳୁଛି ଦୀପାଳି
ଚଉଁରା ମୂଳରୁ ଆକାଶ ଯାଏଁ
ଶଙ୍ଖ ହୁଳହୁଳି ଶବଦେ କମ୍ପୁଚି
ଗୃହ ଠାରୁ ଦେବ ମନ୍ଦିର ଯାଏ ।୫।
ପାଞ୍ଚ ସାତ ରଙ୍ଗେ ପକାନ୍ତି ମୁରୁଜ
ଆସିବା ପଥରେ ନାରୀଏ ମିଶି
ବୋଇତ ବନ୍ଦାନ୍ତି ସାଧବାଣୀ ସାଜି
ନିଜ ପୁଅଝିଅ ଶୁଭମନାସୀ ।୬ ।



ତୁମକୁ ଦେଖିଣ ଲକ୍ଷ୍ମୀ ମା' ଆସନ୍ତି
ଶୋଭାର୍ ପସରା ସାଙ୍ଗରେ ନେଇ
ପାଦପଦ୍ମ ଝୋଟି ପକାନ୍ତି ବୋହୂଏ
ମହାଲକ୍ଷ୍ମୀଙ୍କର୍ ସ୍ୱାଗତ ପାଇଁ ।୭ ।
କୃଷକର୍ ପତ୍ନୀ ଗୋମୟେ ଲିପଇ
ଖଳାବାଡ଼ି ସଙ୍ଗେ ଅଗଣା ଘର୍
କେତେ ଆଶା ତା'ର୍ ସୁନାର୍ 'ସଲେ
ପୁରିଯିବ ତାର୍ ଅମାର୍ ଘର୍ ।୮ ।
ଘରେଘରେ ହୁଏ ମହାଲକ୍ଷ୍ମୀ ପୂଜା
ଦିଅଁଘର୍ ବାସେ କୁସୁମ 'ଲେ
ଖିରି ଖେଚୁଡ଼ିରେ ବାସେ ମହମହ
ବିଲବାଡ଼ି ହସେ ସୋରିଷ 'ଲେ ।୯ ।
ପୋଢୁଆଁ ଅଷ୍ଟମୀ ଓଣ୍ଟୁରୀ ପିଠାରେ
ନୂଆ ଲାଗି ପିନ୍ଧା ମନ ରଞ୍ଜନ୍
ମାଗୁଶୀର୍ ମାସେ ଦାଣ୍ଡେ ବାଡ଼ିସ'।
ଆକା ମାଆ ଗୋଇ ଶୁଭୁଛି କାନ ।୧୦ ।
କିମ୍ବଦନ୍ତୀ ଅଛି ଆଜିର୍ ତିଥିରେ
ଜନ୍ମ ଲଭିଥିଲେ କାଳଭୈରବ
କାଳଭୈରବର୍ ସନ୍ତୁଷ୍ଟ ପାଇଁକି
ଚାଲିଛି ରାଜ୍ୟରେ ପୋଢୁଆଁ ପର୍ବ ।୧୧ ।
ହେମନ୍ତୀ ଆସିବା ଆଗରୁ ଆସନ୍ତି
ବାହାବ୍ରତଘର୍ ସଜାଡ଼ି ହୋଇ
ଘରେ ଘରେ ଚାଲେ ମଉସ୍ତବ
ବଜାରେ ପରିବା ଆକାଶ ଛୁଇଁ ।୧୨ ।
ହେମନ୍ତୀଗୋ ତୁମେ ମରତ ପୁରରେ
ଆବାହନୀ ଗୀତ ଯାଉଛ ଗାଇ
ଅଭ୍ୟର୍ଥନା ଆମେ କରୁ କରୁ ତୁମେ
କେତେବେଳେ ତୁମେ ଯାଅ ପଳାଇ ।୧୩ ।
ମାଣବସା ସାଙ୍ଗେ ପ୍ରଥମାଅଷ୍ଟମୀ
ପିଲାଛୁଆ ସହ ଯେତେକ ନାରୀ
ଗାଁ ଗହଳିରୁ ସହର୍ ପର୍ଯ୍ୟନ୍ତ
ଆନନ୍ଦ ଉଲ୍ଲାସେ ଉଠେ ଉଚ୍ଛୁଳି ।୧୪।

*********



# ଗୁଲି

ପହିଲି ଋତୁରେ ଭାବୁଅଛି ନବ
　　　　　　　　ବରଷକ ତଳ କଥା
ସମୟଟା କେତେ ଶିଘ୍ର ଗଲା ଚାଲି
　　　　　　　　ମନେ ଦେଇ ଗଲା ବ୍ୟଥା ।୧।
ଆର ସନ ଋତେ ନବ ଯାଇଥିଲା
　　　　　　　　ମାମୁଁ ଘର ଗାଆଁ ବୁଲି
ଇସ୍କୁଲ ପଲାଏ କରୁଥିଲେ ଡ୍ରାମା
　　　　　　　　କାହାଣୀଟା ସାରା ଗୁଲି ।୨।
ପିଲାଙ୍କ ସାଙ୍ଗରେ ମିଶିଗଲା ପରେ
　　　　　　　　ଡ୍ରାମାରେ ସେ ନେଲା ଭାଗ
ଟେକିଟାକି କରି ଠିଆ କରେଇଲେ
　　　　　　　　ଯେତେ ବଗୁଲିଆ ସାଙ୍ଗ ।୩।
ରଜା ମନ୍ତ୍ରୀ ସାଙ୍ଗେ କଟୁଆଳ ସାଜି
　　　　　　　　କରିଲେ ରାଜ୍ୟ ଶାସନ
ଶାସକ ରହିଲେ ଶାସନ ଭିତରେ
　　　　　　　　ଅଭାବ ରହିଲା ଧନ ।୪।
କରିତ୍ କର୍ମା ନବ ବେପାରୀ ବେଶରେ
　　　　　　　　ଦେଖାଇଲା ତା'ର କାମ
ବେଶ ପୋଷାକରେ ସଜାଇ ହୋଇଣ
　　　　　　　　ନିଶ ମୋଡ଼ି ନେଲା ଦମ ।୫।
ମଞ୍ଚ ଉପରରେ ଏପଟୁ ସେପଟ
　　　　　　　　ଚାରି ଘେରା ଗଲା ବୁଲି
କଣ୍ଠ ଶୁଖିଗଲା ଲୁଗା ମାରା ହେଲା
　　　　　　　　ନିଜ ନାଁ ଗଲା ଭୁଲି ।୬।



ପଚାରିଲେ ପ୍ରଶ୍ନ ଦର୍ଶକ ମଣ୍ଡଳୀ
କିଏ ତୁମ କିସ ନାମ
ବିଚାରିଲା ନବ ଗୁଲି କହି କହି
ବଢ଼ାଇବି ମୋର ଦାମ୍ ।୭ ।

ରାଇଜଯାକର ସରିକେ ହେବେ ନି
ମୋ ସଙ୍ଗେ କରିବେ ବେପାର
ଏଇ ବେପାରରୁ ରାଇଜ ଯାକର
ଅଭାବ କରିବି ଦୂର ।୮ ।

କହିଲା ଦର୍ଶକେ ବେପାରୀ ପୁଅ ମୁଁ
ବେପାରକୁ ଦିଏ ମେଲି
ବେପାର ବଣିକୁ ଯାହା ଲାଭ ପାଏ,
ଫସାର ନିଏ ମୁଁ ଠେଲି ।୯ ।

ମୋର ନାମ ଠାରୁ ବେପାର
ବାଣିଜ୍ୟ ପୁଅ ଝିଅ ବାପା ମାଆ
ସ୍ତ୍ରୀ ସହିତରେ ଏଯ୍ୟାଡୁ କହିବ
ସେ ଯ୍ୟାଡୁ କହିବ ତାହା ।୧୦ ।

ନବ କଥା ଶୁଣି ଦର୍ଶକ ଭିତରେ
ଉଠିଲା ହସର ଢେଉ
ଦର୍ଶକ ଭିତରେ ଠିଆ ହୋଇ ଜଣେ
କହିଗଲା କାଉ କାଉ ।୧୧ ।

କଥାର ମରମ ବୁଝାଇ ଦିଅହେ
ବେପାରୀ ପୁଅ ଆମକୁ
କହିଲା ଦର୍ଶକେ ଦେଖଇ ମୁଁ ନିତି
ବେପାର ଓ ଫସାରକୁ ।୧୨ ।



ନିଜ ନାମ ମୋର୍ ଅଟଇ୍ ନବୀନ
ବେପାର୍ ନାମ ମହମ
ବାପା ନାମ ମୋର୍ ଅଟଇ୍ ଆପୁଆ
ଚାଲୁଥାଏ ଦମ ଦମ ।୧୩।
ମାଆ ନାମ ମୋର୍ କାଳିକା ଅଟଇ୍
ସ୍ତ୍ରୀର୍ ନାମ କନକ
ପୁଅ ନାମ ମୋର୍ ଅଟଇ୍ ସୁଧାଂଶୁ
ଜିଲ୍ଲାର୍ ନାମ କଟକ ।୧୪।
ଗାଁ ନାମ ମୋର୍ ଅଟଇ୍ ସାଲ୍‌ସା
ଝିଅର୍ ନାମ ସିଲିସି
ସବୁଠାରୁ ମୋତେ ବେଶୀ ଭଲ୍ ଲାଗେ
ମାଛ ଭିତରୁ ଇଲିଶି ।୧୫।
ଦର୍ଶକ ମଣ୍ଡଳୀ ଘରକୁ ଫେରିଲେ
ହସ ହସ ମୁଖ ହୋଇ୍
ଏ ବର୍ଷ ରଜରେ ବସି ଅଛି ନବ
ମୁର୍ହଟି ତାର୍ ଶୁଖାଇ୍ ।୧୬।
ରଜ ତିନି ଦିନ କେତେ ପିଠା ପଣା
ତାଆସ ପଶାର୍ ଖେଳ
ରଜପାନ ଖାଇ୍ ସାଙ୍ଗ ସାଥୀମେଳେ
ହଉଥିଲା ନିତି ଭୋଳ ।୧୭।
ବନ୍ୟା ବତ୍ୟା ହେଲା ଘର୍ ଉଜୁଡ଼ିଲା,
ବାପାମାଆ ଗଲେ୍ ଚାଲି୍
ରଜ ସରିଗଲା କେହି ନକହିଲେ୍
ପିଠା ଖଣ୍ଡେ ଖାଆ ବୋଲି୍ ।୧୮।

*********



# ଶ୍ରାବଣୀ

ଆକାଶ ବକ୍ଷରେ ଭାସଇ ବାଦଲ
　　　　ମନରେ ବେଦନା ଭରା
ଶ୍ରାବଣୀ ଗୋ ତୁମ ସ୍ମୃତି ଚମକାଓ
　　　　ତୁମରି ବରଷା ଧାରା୧ ।
ବଇଶାଖୀ ଖରା ତପ୍ତ ବସୁନ୍ଧରା
　　　　ଜଳାଏ ବିରହେ ମତେ
ପୂର୍ଣ୍ଣିମା ଜହ୍ନକି ଖୋଜିଲେ ମିଳିବ
　　　　ଅମା ଅନ୍ଧକାର ରାତେ ।୨ ।
ତୁମ ପାଦ ଶବ୍ଦ ଶୁଭେ ଖାଲି ମତେ
　　　　ଧାଏଁ ମରୀଚିକା ପଥେ
ତୁମ ଜଳଧାରା ପ୍ରେମ ପ୍ରିତି ଭରା
　　　　ସାଇତିଛି ହୃଦ ସାଥେ ।୩।
ଦିଗ ଚମକାଇ ଯେବେ ଆସ ତୁମେ
　　　　କର ସ୍ମୃତି ରୋମନ୍ଥନ
ହଜିଯାଏ ପୁଣି ତୁମରି ସତ୍ତାରେ
　　　　ଦେଖଇ ପୂର୍ଣ୍ଣୀମା ଜହ୍ନ ।୪ ।
ଆସି ତରତର କର କି ମନ୍ତର
　　　　ଅଶାନ୍ତ ହୃଦୟେ ମୋର
କର ପ୍ରଶମିତ ବାରିଧାରା ଢାଳି
　　　　ଦଗ୍ଧିଭୂତ ପ୍ରାଣ ମୋର ।୫ ।

*********



# ଅଲିଭା ଦୀପ

ଅଲିଭା ଦୀପ ଲିଭେନି କେବେ
ଲିଭି ବି ଥାଏ ଜଳି
ମହାନ ଆତ୍ମା ଝଟକୁ ଥାଏ
ପଡ଼େନି କେବେ ଝଳି ।୧।
ଜାତିର୍ ପିତା ଚାଲି ଗଲେବି
ଅଛ ଅମର୍ ହୋଇ
ଝୁରୁଛି ଦେଶ ଝୁରୁ ବି ଥିବ
ଯୁଗକୁ ଥିବ ରହି ।୨।
ସ୍ୱାଧୀନ ଭାରତ ହୋଇଛି ଦୁଷ୍ଟ
ଦେଖହେ ମହାସନ୍ଥ
ଅଶ୍ରୁ ଛଳ ଛଳ ତୃଷିତ ଅଧର୍
ଦୁର୍ନିତିରେ ରୋଗାକ୍ରାନ୍ତ ।୩।
କରିଥିଲ ସତ୍ୟ ହଟାଇବ ଦେଶୁ
ଅଛି ଯେତେକ ଅନୀତି
ଜନତାଙ୍କ ଦୁଃଖ ବୃକ୍ଷ ଓପାଡ଼ିବ
ହସିବ ଏ ଦେଶ ଜାତି । ୪।
କର୍ମ କର୍ତ୍ତବ୍ୟର୍ ସମ୍ବିଧାନ ଗଢ଼ି
ସଭିଙ୍କୁ ରଖିବୁ ବାନ୍ଧି
ରାମ ରାଜ୍ୟ ହେବ ବେକାରୀ ଶ୍ରମିକ
ସଭିଏଁ ରହିବେ ଛନ୍ଦି । ୫।
ନହେବେ ହିନସ୍ତା କନ୍ୟାପିତା ମିତା
ଯଉତୁକ ଦେବା ପାଇଁ
ସ୍ୱାର୍ଥର୍ କାଳିମା ହଟାଇବ ଦେଶୁ
ତ୍ୟାଗ ଆଲୋକ ଜଳାଇ । ୬।
କରି ପରିଶ୍ରମ ହେବ କାର୍ଯ୍ୟକ୍ଷମ
ହରିବ ଜନତା ଦୁଃଖ
ଇତିହାସ ବକ୍ଷେ ଲେଖି ହୋଇଯିବ
ଆମରି ଦେଶର୍ ସୁଖ ।୭।



ଋଷି ଧନ ଧ୍ୟାନ ଜ୍ଞାନ ଓ ବିଜ୍ଞାନ
ଦେଶ ଓ ଜାତିର୍ ପ୍ରଗତି ବାଟ
କହୁଥିଲ୍ ନିତି ଅରଟ ଚଳାଅ
ଦେଶର୍ ଏ ପରା ମୁକ୍ତି ବାଟ ।୮।
ଋଷି ଥିଲା ତୁମ ପ୍ରାଣର୍ ଦେବତା
ବୁଝୁଛି ମରମ କଥା
ଋଷି କଉଣଲେ ଗଢ଼ିଥିଲା ଦେଶ
ଭିତରେ ସ୍ନେହ ମମତା ।୯।
ହିନ୍ଦୁ ମୁସଲମାନ ଜଇନ ବଉଦ୍ଧ
ପାରସୀ ଓ ଶିଖ ଜନ
ନୂଆ ଭାବ ଆଣି ସବୁରି ପରାଣେ
ଏକାଠି କରିବ ମନ ।୧୦।
ଜନ ସେବା ବ୍ରତ ରାକ୍ଷୀ ବାନ୍ଧି ହାତେ
ଦରିଦ୍ରଙ୍କ ହୋଇ ସାଥୀ
ସାଧୀନତା ଲାଗି ସତ୍ୟ ଅହିଂସାର୍
ଡୋରି ଧରିଥିଲା ନିତି ।୧୧।
ଏ ଦେଶ ସାଧୀନ ପାଇଁ ତୁମ ମଥା
ଲୋଟିଛି କା ପାଦ ତଳେ
ବିଶ୍ୱ ସାମ୍ୟବାଦ ଦେ'ରାଇ ଆଣିଣ
ଚାଲିଗଲ ଆର୍ ପାରେ ।୧୨।
ଆଶା 'ଳବତୀ ନହୋଇ ପାରିଣ
ରହିଲା କଳ୍ପନା ବୃକ୍ଷେ,
ତୁମ ସାଧୀନତା ଲୋଟୁଅଛି ଆଜି
ସାର୍ଥ ଅନ୍ଧକାର୍ ବୃକ୍ଷେ ।୧୩।
ମରିନାହଁ ତୁମେ ମରିବ ନାହିଁଟି
ରହିଛ ଅମର୍ ହୋଇ
ଖୋଜୁଅଛି ଦେଶ ଖୋଜୁଅଛି ଜାତି
ରହିଅଛି ପଥ ଚାହିଁ ।୧୪।

*********



# ସତ୍ୟ

ଆକାଶ ଓ ପୃଥିବୀର ଦ୍ୱନ୍ଦ ଭିତରେ
ଆତ୍ମା ତା'ର ବାଛିନେଲା ପଥ
ବିବେକର ଦଂଶନରେ ମନକୁ ସଜାଡ଼ି
ବାହି ନେଲା ଯିଏ ସତ୍ୟରଥ ।୧ ।
ଆଜ୍ଞମନେ କହିଲା ସେ ଜୀବନର ପଥେ
ମୁହିଁ ଚାଲିବିଟି ହୋଇ ଏକା ଏକା
ଅନ୍ଧକାର ଗହ୍ୱର ଭିତରେ ଥାଇ
ଗଢ଼ିବି ମୁଁ ସତ୍ୟର ଇଲାକା ।୨ ।
କିଏ କହେ ଅନ୍ଧକାର ଭୟଙ୍କର
ନାହିଁ ତାର ସ୍ୱାଦ ଅବା ଗନ୍ଧ
ତମସାର ଯିବାପରେ ଆଲୋକର
ରୂପରେଖ ଲାଗଇ ସୁଆଦ ।୩ ।
ତା'ର ଅବା ରୂପ କାହିଁ, ନିଷ୍କଳତା
ନିରବରେ କରୁ ଅନୁଭବ
ତା' ନାମ ରେ ପ୍ରବଞ୍ଚନା କରିସୃଷ୍ଟି
ତୁଛାଟାରେ ଦେଉ ଅପବାଦ ।୪ ।
ଖୋଜିବାରେ ଥାଏ ଯେଉଁ ସୁଖ
ପାଇବାରେ ନଥାଏ ଆନନ୍ଦଯେତେ
କହ ଜୀବନଟା ନୁହଁଇ ସହଜ
ମୋଡ଼ ଅଛି ପ୍ରତି ପଦପଦ ।୫।
ଜୀବନରେ ଦୁଃଖ ସୁଖ ଥାଉ ପଛେ ଯେତେ
ଘୋଟି ଥାଉ ଅଶାନ୍ତିର ଜ୍ୱାଳା
ତଥାପି ଏ ମଣିଷଟି ମରିଚୀକା
ପଛେ ଧାଇଁ ହୁଏଟି ବାଉଳା ।୬।
ଜାଣୁପଛେ ଜୀବନଟା ଅଟେ କ୍ଷଣସ୍ଥାୟୀ
ଆଶା ଆମ ଯାଏ ବଢ଼ି ବଢ଼ି
କର୍ତ୍ତବ୍ୟର ନାମ ନେଇ ବେଳେ ବେଳେ
ଅସତ୍ୟରେ ଯାଉ ବୁଡ଼ି ବୁଡ଼ି ।୭ ।



ବଞ୍ଚିବାରେ ନାହିଁ ଯାର ଲୋଭ
ମରିବାରେ ନାହିଁଟି ଶୋଚନା
ଜୀବନକୁ କଷଟି ପଥରେ କଷିବାକୁ ଯାଇ
ଭୋଗୁ ସିନା ଅନେକ ଯାତନା ।୮।
କର୍ତ୍ତବ୍ୟର ଦ୍ୱାହି ଦେଇ ମଣିଷର
ଧୈର୍ଯ୍ୟସବୁ ଯାଏଟି ପଳାଇ
ଆସେ ନାହିଁ ଜ୍ଞାନର ଚେତନା
ମୋହମାୟା ଭ୍ରମସୃଷ୍ଟି କରିବାକୁ ସ୍ରଷ୍ଟା
ଏ ସୃଷ୍ଟିକୁ କରିଛି ସର୍ଜନା ।୯।
ଏ ଯୁଗରେ ମାନବର ସତ୍ତାମଧ୍ୟେ
ନାହିଁ ପ୍ରେମ ଶାନ୍ତି ଭକ୍ତି ଶ୍ରଦ୍ଧା
ସାଙ୍ଗେ ଧରିବୁଲେ ଅହଂ ଭାବ
ସୁଯୋଗ ପାଇଲେ
ପଛେ ମାରିବଟି ବିଧା ।୧୦ ।
ଏ ସମାଜ ବିବେକକୁ ଦେଇ ମୃତ୍ୟୁ ଦଣ୍ଡ
ଦୟା ଧର୍ମ କରିଅଛି ତେଜ୍ୟା
ସୂର୍ଯ୍ୟାଲୋକେ ଦିଶେ ରଙ୍ଗ ଯୋବ,
ଚନ୍ଦ୍ରାଲୋକେ ତେଜଇଟି ଲଜ୍ଜ୍ୟା ।୧୧ ।
ଏ ମଣିଷ ସମୟର ଉପଯୋଗ କରି
ସାଜେ କେବେ ଅସଲି ନକଲି
ଆତ୍ମା କହେ ଯଦି ତାକୁ ପାରିବଟି ଧରି
କର୍ମ ତାର ଉଠିବ ଉଜ୍ଜ୍ୱଳି ।୧୨।
ଶରୀରରେ ଥାଏ ଯେବେ ଆତ୍ମା
କହେ ଶୁଣେ ବ୍ୟଥା ଭରା କଥା
ମାଟିଘଟୁ ଆତ୍ମାଗଲେ ଛାଡ଼ି
ଲୋଟେତଳେ ନ ରୁହଇ ସିଧା ।୧୩।



# ସପନ ଦେଖିଲି

ସପନ ଦେଖିଲି ଶେଯ ବିଛେଇଛି
ସୁଖ ଦରିଆର ବେଳେ
ସପନରେ ଥାଇ ଦେଖେ ମୁଁ ବସିଛି
ଉଦାସୀ ନଦୀର କୂଳେ ।୧ ।
ସେ ନଈ କୂଳରେ ଦେଖେ ମୁଁ ଫୁଟିଛି
ଦରଦୀ କାଶ ତଣ୍ଡୀ
ଦୁଃଖର ନାଆଟି ବାହୁଛି
ଶମନ ବସି ଅଛି ନାଆମଣ୍ଡି ।୨ ।
ବେଳା ଭୂମିପରେ ମନଟି ମୋହର
ନୀରବରେ ଥାଏ ବସି
ସମୟ ସ୍ରୋତରେ ଦରଦୀ ହୃଦୟ
ନିସଃଙ୍ଗରେ ଯାଏ ଭାସି ।୩ ।
ଜଳର ପାଖରେ ହୋଇଣ ମୁଁ ଠିଆ
ଶୁଖିଯାଏ ଖାଲି ତଣ୍ଟି
ମନର ଗହନେ କଣ୍ଟା ଗଛପରେ
କଳିଟିଏ ଉଠେ ଫୁଟି ।୪ ।
ତୋଳିଲି ମୁଁ କଢ଼ି ଫୁଟିଗଲା କଣ୍ଟା
ବହେ ରକତର ଧାର
ରକତର ଧାରେ କାନ୍ଦୁଛି ଝିଅଟେ
ରୁଷିଅଛି ତା'ର ବର ।୫ ।

*********



# ଭାରତ ମାତାର

ଭାରତ ମାତାର ରଖିବା ସମ୍ମାନ
ଆମେ ଯେତେ ପୁଅ ଝିଅ
ଏକାଠି ହୋଇଣ ଗାଇବା ସମସ୍ତେ
ଆମ ଦେଶ ହଉ ଜୟ ।୧ ।
ସାଜି କଳାକାର ସଜେଇ ମାଆକୁ
ଦିଶିବ କେଡ଼େ ସୁନ୍ଦର
ଗାଇବାରେ ଆସ ଏକ ମେଳ ହୋଇ
ଜୟ ଭାରତ ମାତାର ।୨ ।
ବୈଜ୍ଞାନିକ ହୋଇ ନୂଆ ଚିଜ ଗଢ଼ି
ରଖିବା ଦେଶର ନାଆଁ
ସୈନିକ ହୋଇ ଶତ୍ରୁକୁ ତଡ଼ିଲେ
ହସିବ ଆମରି ମାଆ ।୩ ।
ସୁନାର 'ସଲ 'ଲାଇବା ଦେଶେ
କୃଷକ ଭାଇକୁ ଧରି
ଉଚ୍ଚ ନୀଚ ଭେଦ ଭାବ ଭୁଲିଯିବା
(ଆମ) ଜନତା ନେତାଙ୍କୁ ଧରି ।୪ ।
ଏହି ଦେଶ ପାଇଁ ପଡ଼ିଛନ୍ତି ବନ୍ଧୀ
କେତେ ଯେ ଶହୀଦ ବୀର
ଆଗକୁ ଆଗେଇ ଚାଲିବାଟି ଆମେ
ଉଚ୍ଚେ ଟେକି ଆମ ଶିର ।୫ ।

*********



# ସକାଳର ସୂର୍ଯ୍ୟ

ସକାଳର ସୂର୍ଯ୍ୟ ଦେଖେ

ସୁନ୍ଦର ଧରାକୁ

ଗୋଧୂଳିର ସୂର୍ଯ୍ୟ ଦେଖେ

ପୂର୍ବାହ୍ନ ଚିହ୍ନକୁ ।

ମୋ ଆଖିର ନୂଆ ସପ୍ନ

ନୂଆ ଦିନ ଦେଲିଣି ହଜେଇ

ବିଶ୍ୱାସର ସଞ୍ଜୀବନୀ

ଧିରେ ଧିରେ ଗଲାଣି ଉଭେଇ ।

ଅନ୍ଧକାର ଗହନରେ

ହଜିଯାଏ ଜୀବନର

ଯେତେ ଯେତେ ଆଶା ଉଦ୍ଦୀପନା

ସମୟର ଝାଞ୍ଜି ପବନରେ

ଲିଭିଯାଏ ପ୍ରାଣ ଦୀପ ସିନା

ଭବିଷ୍ୟତ ଅନ୍ଧାର ବୁକୁରେ

ଭାଜିପଡ଼େ କଳ୍ପନା ମହଲ

ଭାସି ଭାସି ବୁଡ଼ି ଯାଏ

ଆଶାର ନଈରେ

ତା ମନର କାମନା ସକଳ ।



ତା ହୃଦୟ ତାଏରୀରେ
ଲେଖାଥିବା ପୃଷ୍ଠାସବୁ
ପୃଷ୍ଠା ପରେ ପୃଷ୍ଠା ଓଲଟାଇ
ଲାଗେ ସିଏ ଅତି ଆପଣାର
ମନେ ମନେ ଭାବିନିଏ
ଅତୀତର ସ୍ମୃତି ସବୁ
ହାର କରି ପକାନ୍ତି ଗଳାର ।
ଭାବନା ତା' ରହେଟି ମନରେ
ଇଛା ତାର ହୁଏ ନାହିଁ ପୂର୍ଣ୍ଣ
ଧୀର ସ୍ୱରେ କହେ ମହାକାଳ
ପାହିବାକୁ ବସିଲାଣି ରାତି
ଭଙ୍ଗା ଗଢ଼ା ଏଇତ ଜୀବନ ।
କୁହନାହିଁ କୁହନାହିଁ ଆଉ
ବଢ଼ିଯାଏ ମୋ ହୃଦୟ ସ୍ପନ୍ଦନ
ଏହାପରେ କୁହମତେ
ବଇକୁଣ୍ଠ ଯିବି ନା
ମୋ ହେବ ପୂର୍ନଜନ୍ମ ।

*********



# ମାଆ

ମାଆ ବୋଲି ଯେଉଁ ନାଆଁଟି
ସତେ କେଡ଼େ ସୁନ୍ଦର
ତା ଓଠରୁ ଝରୁଥାଏଟି
ମମତାର ନିର୍ଝର ।୧।
ଖାଇ ନଥିଲେ କେ କହିବ
ଆହାଃ ମୋ ଧନ ମାଳୀ
ଭୋକ କଲାକି ମୋ ଧନକୁ
ମୁଖ ପଡ଼େ ଝାଉଁଳି ।୨।
ତା ସ୍ନେହ ଶରଧା ଆଶୀଷର ବାରି
ମୋ ଜୀବନ ମହୌଷଧି
ଯେଣେ ଯାଉ ପଛେ ରହିଥାଏ ଦୃଷ୍ଟି
ମୋର ଜୀବନ ପରିଧି ।୩।
ମୋ ଆଖିର ଲୁହ ଦେଉଥାଏ ପୋଛି
ଛଳ ଛଳ କରି ଆଖି
ଅନ୍ତର ବେଦନା କୋହ ଲୁହ ଯେତେ
ବୁକୁପରେ ଛାପି ରଖି ।୪।
ତା' ମନର ବେଗ ପାଳି ନାହିଁ କଳି
ତା' ଅଭିମାନର ବ୍ୟାସ
ତା ବକ୍ଷୁ ଅମୃତ ପାନ କରି ମୋର
ମେଣ୍ଟି ଯାଇଅଛି ଶୋଷ ।୫।
ତା ଦେହରୁ ଦେଇ ରକ୍ତ ଓ ମାଂସ
ଗଢ଼ିଛି ମୋର ଶରୀର
ମାଟି ମାଆ ପରି ସହିଅଛି ସବୁ
ଦେହକୁ କରି ପଥର ।୬।



ବୀର୍ ପ୍ରସବୀନୀ ବିରାଙ୍ଗନା ସେହି
ମାଆପରି କେହି ନାହିଁ
ତା କୋଲୁ ଜନମି ରଥି ମହାରଥୀ
ଯାଇଛନ୍ତି ଧନ୍ୟ ହୋଇ ।୭।
ଚିର୍ ବନ୍ଦନୀୟା ସଦା ପୂଜନୀୟା
ଅଟେ ମୋର୍ ସେହି ମାଆ
ନ ଖାଇ ନ ପିଇ ଝୁଣ୍ଟି ପଡ଼ିଲେବି
କେହି କରିବେନି ଆହା ।୮।
ତା' ସେହ୍ନ ମମତା ତା' କୋଳ ଉଷ୍ଣତା
ଭୁଲି ପାରିବିକି ମୁହିଁ
ନ ଥାଉ ପଛକେ ଯେଣେ ଗଲେ ତେଣେ
ରହିଥାଏ ଛାଇ ହୋଇ ।୯।

*********



# ମାଆ ଓ ମମତା

ମାଆ ଅଟଇ ମମତାର୍ ସାଗର୍
ତା' ସ୍ନେହ କ୍ଷମା ଅସରନ୍ତି ଭଣ୍ଡାର୍ ।
ମାଆ ଅଟେ ଦୟାମୟୀ କ୍ଷମାର୍ ସାଗର୍
ଅଭୟ ଦାୟିନୀ ସେତ ଅତୀବ ସୁନ୍ଦର୍ ।
ତା'ର୍ ଡ଼ାକ ମୋ ଜୀବନ ପ୍ରଥମ ଝଙ୍କାର୍ ।
ତା' କଥା ମୋ କାନେ ଶୁଭେ ମଧୁର୍ ସୁସ୍ୱର୍ ।
ମାଟିର୍ ଉଷ୍ଣତା ମାଆ ମମତାରେ ଅଛି
ପାହାଡ଼ ପର୍ବତ ପ୍ରାୟେ ଦୁଃଖକୁ ସହିଛି ।
ଆକାଶ ପରି ତା' ହୃଦୟ ଅଟଇ ବିଶାଳ
ଫୁଲ୍ ପରି ତା'ର୍ ମନ ଅତ୍ୟନ୍ତ କୋମଳ ।
ସିନ୍ଧୁ ପରି ତା' ଅନ୍ତର୍ ଅଟଇ ଗଭୀର୍
ସ୍ରଷ୍ଟାଠାରୁ ବଡ଼ ସିଏ ଗଢ଼ଇ ସଂସାର୍ ।
ତା' ଦେହରୁ ଦେଇ ମୋତେ ରକତ ଓମାଂସ
ଗଢ଼ିଣ ନଶ୍ୱର୍ ଦେହ ବିଭୁ ଆଦେଶ ।
ଧୂସର୍ ଦେହୁଁ ମୋର୍ ଝାଡ଼ିଣ ଧୂଳି
ପଥର୍ ପ୍ରାୟେ ସହି ପଡ଼ଇ ମଉଳି ।
ମାଆର୍ ଶଙ୍କ ଅଟେ ଅମୂଲ୍ ମୂଲ୍ୟ
ତା'ର୍ ବାତ୍ସଲ୍ୟ ସଙ୍ଗେ କେ ହେବ ତୁଲ୍ୟ ।
ତା' ଆଙ୍ଗୁଳି ଧରି ମୁଁ ଶିଖିଲି ଚାଲି
ତା' ତ୍ୟାଗ ବଳିଦାନ ନ ଯିବି ଭୁଲି ।
ତା ଶବ୍ଦ ଶୁଣି କଥା କହି ଶିଖିଲି
ଯୁଆଡ଼େ ଯାଏ ତା' ମୁଖ ଦିଶଇ ଖାଲି ।
ମାଆ ଦେଇଛି ଜନମ ପ୍ରଥମ ଗୁରୁ
ତା' ପାଦ ଧୂଳି ହରେ ସେ କଳୁଷକୁରୁ
ଏ ମାଟି ଘଟି ଯିବ ମାଟିରେ ମିଶି
ତେବେ ବି ତା'ର୍ ମୁହଁ ଯିବଟି ଦିଶି ।
ଏ ମାୟା ଦୁନିଆରେ ହୋଇଣ ଭୋଳ
ବିଷୟ ବାସନାରେ ତେଜନ୍ତି କୋଳ ।
ଯାଆନ୍ତି ଭୁଲି ମାଆ ସ୍ନେହ ମମତା
ମାଆର୍ ପଦେ କଥେ ଲାଗଇ ପିତା ।।

*********



# କବିତା ବନିତା ଲତା

କବିଙ୍କ ମନର ଭାବ ଓ ଭାଷାର
ଶବ୍ଦପୁଞ୍ଜିକୁ ଏକାଠି କରି
କାଗଜ କାଳିରେ ଯେଉଁ ରୂପ ନିଏ
ସେ ଏକା ଅଟଇ କବିତା ବଳି ।୧ ।
ରାଜ୍ୟ ରାଜନୀତି ଜୀବନ କାହାଣୀ
ପଦ ପଦକରେ ହୁଅଇ ଲେଖା
ଷୋଳସସ୍ର ଗୋପୀ ନାଚୁଥିଲେ ଗୋପେ
ପାଖେ ଥିଲେ ତାଙ୍କ ଗୋଟଏ ସଖା ।୨।
ପୁରୁଷର ସୁଖ ସମ୍ଭୋଗ ସହିତ
ଜୀବନେ ପୂର୍ଣ୍ଣତା ଆଣିବା ପାଇଁ
ସ୍ୱାର୍ଥ ତ୍ୟାଗ କରି ତା' ଚଲା ପଥରେ
କୁସୁମିତ କରି ନିଏ ଆଗେଇ ।୩ ।
ଯନ୍ତ୍ରଣା ଯୁଇରେ ଜଳୁଥାଏ ନିତି
ସମର୍ପିତ ହୋଇ ବନେ ବନିତା
କେତେବେଳେ କେଉଁ ରୂପେ ହୁଏ ଠିଆ
ଜନନୀ ଭଗନୀ ଜାୟା ଦୁହିତା।୪।
ଶକ୍ତି ନାହିଁ ଯା'ର ପାଦରେ ଟିକିଏ
ଦଣ୍ଡେ କି ନିମିଷେ ହୋଇବ ଠିଆ
ଆଶ୍ରା କରେ ଯିଏ ଗଛ ବାଡ଼ ଛାତ
କାଢ଼ିବ କି ତା' ଦେହୁଁ କଅଁଳ କୁଆଁ ।୫।
ଆଶ୍ରାକରେ ଲତା ବଢ଼ିବ ଆଗକୁ
ଲମ୍ବାଇଣ ତା'ର ଶାଖା ପ୍ରଶାଖା
ଟାଣ ନୁହେଁ ମୂଳ ଅଗଟି କଅଁଳ
ସବୁବେଳେ ଖୋଜେ ସାହାରା ସଖା ।୬ ।
ଆଶ୍ରା ଖୋଜୁଥାନ୍ତି ତିନିକି ତିନିହେଁ
ଆଗରେ ପଡ଼ିଛି ସର୍ପିଳ ରାସ୍ତା
ବିନା ଆଶ୍ରା କେବେ ବଢ଼ି ନ ପାରନ୍ତି
କବିତା ବନିତା ସହିତ ଲତା ।୭ ।

*********



# ଯଦି ମୁହିଁ ଯାଣିଥାନ୍ତି

ଯଦି ମୁହିଁ ଯାଣି ଥାନ୍ତି
ଏ ଦୁନିଆ ବିଶ୍ୱାସ ଘାତକ
ବାନ୍ଧି ମୁଁ ନ ଥାନ୍ତି ନୀଡ଼
ଦିଗନ୍ତର୍ ଛାଇ ଆଲୁଅରେ ।
ଆଶା ଆର୍ ବିଶ୍ୱାସର୍
ମେଲି୍ ମୁଁ ନ ଥାନ୍ତି ନାଆ
ଅବିଶ୍ୱାସୀ ଦରିଆ ମଝିରେ୍ ।।
ଯଦି ମୁହିଁ ଯାଣି ଥାନ୍ତି
ଜୀବନଟା ଯନ୍ତ୍ରଣାର୍ ଦ୍ରୁମ
ପୋତି ମୁଁ ନ ଥାନ୍ତି ମଞ୍ଜି
ପ୍ରକୃତିର୍ ଜହର୍ ଜଠରେ୍ ।
(କିମ୍ବା) କଅଁଳିଆ ପତ୍ର ସରେ୍
ହୋଇଣ ବିଭୋର୍
ରହି ମୁଁ ନ ଥାନ୍ତି କେବେ
ମାୟା କାରାଗାରେ୍ । ।
ଯଦି ମୁହିଁ ଜାଣିଥାନ୍ତି
ସମୟର୍ ଚଲା ପଥ
ମେଞ୍ଚା ମେଞ୍ଚା ବହଳ ଅନ୍ଧାର୍
ଖୋଜି ମୁଁ ନଥାନ୍ତି କେବେ
ଆଲୋକର୍ ଶିଖା ।
ଜୀବନର୍ ଗୋଧୂଳି ବେଳାରେ୍
ଆଜି ମୁହିଁ ହୁଅନ୍ତି କି ସଜ
ଲକ୍ଷ୍ୟସ୍ଥଳେ ଯିବା ପାଇଁ ଏକା । ।



ଲକ୍ଷ୍ୟସ୍ଥଳେ ଯିବାର୍ ବାଟରେ
ସ୍ମୃତେ ଧୂପ ଜଳୁଥାଏ ନିତି
ମୋ ମନର୍ ଭଙ୍ଗା ଦେଉଳରେ ॥
ମାଟି ଘଟ ରହି ସେ ଦେଉଳେ
ଦେଖୁଥାଏ ନିରବେ ନିଛଳେ । ।
ଭାବୁଥାଏ ଆସିବ କି ଫେରି
ଅତୀତର୍ ସୁଖ ସପ୍ନ ଯେତେ ।
ପ୍ରିତି ପାତ୍ରେ ଜଳାଇବ ବତୀ
ଜୀବନର୍ ଅମୃତ ମୁହୂର୍ତ୍ତେ ॥
ଉପରକୁ ଚାହିଁ ଦେଖେ
ଲକ୍ଷ ଲକ୍ଷ ତାରକା ଭିତରେ ।
ଆକାଶଟା ଦିଶୁଅଛି ମ୍ଳାନ,
ଜୀବନର୍ ଛୋଟ ବଡ଼
ଘଟଣା ଭିତରେ
ସ୍ମୃତି ଆଜି ଦିଶେ ମଲାବନ୍ଧ । ।
(ଯେପରି) ପାହାଡ଼ର୍ ପଛପଟେ ଲୁଚିଯାଇ ଖରା
ଚାରିଆଡ଼ ଦିଶେ ଛାଇ ଛାଇ,
ଜୀବନର୍ ଗତି ପଥ ଅଟଇ ବୁନ୍ଧର୍
ସତେ ଅବା ଅଙ୍କା ବଙ୍କା ନଈ ।
ଜୀବନର୍ ନଈ ଧାରେ ଫୁଟେ ସ୍ମୃତି ଫୁଲ
କେବେ କେବେ ପଡ଼େ ସେ ମଉଳି ।
ମୋ ଆଖିର୍ ପରଦାରେ ଯେବେ ଦେଖେ ତାକୁ
ଭାବନାରେ ମନ ମୋର୍ ପଡ଼ଇ ଝାଉଁଳି ॥

*********



# ଆସ ବର୍ଷା

ଧରା ଡାକେ ଆସ ବର୍ଷା
କରନା ବିଳମ୍ବ ଆଉ ଶ୍ରାବଣ ଡ଼ାକୁଛି ।
ଛାଇ ମେଘ ଭାସି ବୁଲେ ଆକାଶ ବକ୍ଷରେ
ଦେଖ ତୁମେ ଋତୁ ବଦଳିଛି ।୧ ।
ତୀର୍ଯ୍ୟକ ଚାହାଣୀ ହାଣି ଆସୁଛନ୍ତି
ବାଳସୂର୍ଯ୍ୟ ପୂରୁବ ଦିଶାରୁ ।
ପଛରେ ଆସେ ଅମ୍ବୁଜ ତା' ପକ୍ଷ -
ମେଲେଇ ଦେଇ ମଦିରା ନିଶାରୁ ।୨।
ଅଧାଛାଇ ଅଧା ଆଲୁଅରେ ବର୍ଷା ଦେଖେ
ମ୍ଳାନ ଦିଶେ ସୁନୀଳ ଆକାଶ,
ଟଗର ଓ ଚମ୍ପା ଫୁଲ ପିନ୍ଧି
ଶୋଭା ଦିଶେ ଧରାତ୍ରିର ବାସ ।୩ ।
ମୃଦୁ ମୃଦୁ ମଳୟରେ ଭାସିଆସେ ଫୁଲର ସୁରଭି
ଦଲକା ଦଲକା ପବନରେ
କର୍ଅଁଳିଆ ପତ୍ର ସବୁ ଉଠଇ ପଲ୍ଲବୀ ।୪ ।
ସରସୀରେ ପଦ୍ମ କଇଁ
ପ୍ରତୀକ୍ଷାରେ ରହିଥାନ୍ତି ଅନାଇ ଆକାଶେ
ଆମୋଦିତ ହୋଉଥାନ୍ତି ବେଳେ
ଦୂରପାଇ ପ୍ରିତିର ପରଶେ ।୫ ।
କୃଷ୍ଣଚୂଡ଼ା ନାଲିଓଠୁ ଝରେ ହସ
ଲାଜେଇ ଲାଜେଇ,
ପତ୍ର ଲ'ାପା ଭିତରେ
ପ୍ରୀତି ଭରି ପଠାଏ ସେ ପାଖୁଡ଼ା ସଜେଇ ।୬।
ଶ୍ରାବଣକୁ ଦବା ପାଇଁ ଠିକଣା ଖୋଜୁଛି ସିଏ,
ଗଳିକନ୍ଦି ଖୋଜୁଅଛି ବଜାର ଭିତରେ,
ଲୁଚିକି ରହିଛି କାହିଁ, ନ ପାଇ -
ଯାଉଛି ଫେରି ବିଷାଦ ମନରେ ।୭ ।



ବରଷା ଆସିଛି ମର୍ତ୍ତେ
ପାଦ ତା'ର୍ ନ ଲାଗଇ୍ ତଳେ
ଧରା ତନୁ ମନେ ଆଜି
ଆନମନେ ଶିହରଣ ଖେଳେ ।୮।
ଶରତ କାଉଁରୀ ସ୍ପର୍ଶେ ହୁଏ ସେ ବିଭୋର୍
ପାର୍ବଣରେ୍ ପିଠାପଣା ପୂଜା ମାଆଙ୍କର୍ ।୯।
ତୋର୍ ଆଗମନେ ସର୍ବେ ଯାଆନ୍ତି ବଦଳି
କିନ୍ତୁ ବଦଳେନି ଧରା କେବେ
କାହାକୁ ସେ ଯାଏ ନାହିଁ ଭୁଲି୍ ।୧୦।
ତୁ ଦେଉ୍ ଶୀତଳ ଛାୟା
ବର୍ଷା ବର୍ଷି ଧୂସର୍ ଅରଣ୍ୟେ
ମେଣ୍ଟିଯାଏ ଦୀର୍ଘ ଶୋଷ
ପଲ୍ଲୀରୁ ସହର୍ ଯାଏ ରଖି ତୋତେ ଧ୍ୟାନେ ।୧୧।
ତୋ ସଙ୍ଗେ ଜଡ଼ିତ ସଦା
ଜୀବ ଜଗତର୍ ସର୍ବେ ଏକ ଆତ୍ମାପରି
ସତେ ଅବା ଆଙ୍କୁ ସଦା
ନଦୀ ଜଳଧର୍ ଚିତ୍ର
ତୂଳୀ ଧରି୍ ମୁଗ୍ଧ ଶିଳ୍ପୀ ପରି୍ ।୧୨।
କୋଣେ କୋଣେ ଢାଳି ଦେଉ୍
ସରଗର୍ ସଞ୍ଜୀବନୀ ସୁଧା
ଆଶୀର୍ବାଦେ ଚାଲଇ୍ ଲେଖନୀ
କବି ମନ ନମାନଇଁ ବାଧା ।୧୩।



ତୋ ଦେହର୍ ବିନ୍ଦୁ ବିନ୍ଦୁ ରକ୍ତ ନେଇ
ଧରା ଦିଶେ ସବୁଜ ସୁନ୍ଦର
ନିମିଷକେ ଯାଉ୍ ତୁ ବଦଳି
ଲୁଟି ନେଉ୍ ସମ୍ପଦ ସକଳ ।୧୪।
ଜିହ୍ୱା ମେଲି କରୁ ତୁ ବିଧ୍ୱଂସ,
ଏ ସଂସାର୍ ଏ ଜନ ଜୀବନ
ଘଡ଼ି କରେ ଉଗ୍ରରୂପେ ଡାକିଆଣ
ପଙ୍କ ମେଲି ପ୍ରଳୟ ପ୍ଲାବନ ।୧୫।
ଶୁଣି ତୋର୍ ନିନ୍ଦା ଅପନିନ୍ଦା
ଭୁଲେନାହିଁ ଏ ବାଇଆ ମନ,
ଭଲ୍‌ପାଏ ବୋଲି ସିନା ବର୍ଷା
ଶୁଣେ କେତେ ନିନ୍ଦା ଅପମାନ ।୧୬।
ଯାହା ଯିଏ କହୁପଛେ ତୋତେ
ତୋର୍ ମୋର୍ ସଂପର୍କ ଅନନ୍ୟ
ସବୁ ପଛେ ଯିବା ଭୁଲି ଆମେ
ଭୁଲିବାନି ଅମୃତ ଆନନ ।୧୭।

*********



# ମୌସୁମୀ

ମୌସୁମୀ ଆସିବ ମୌସୁମୀ ଆସିବ
ପଡୁଥିଲା ଡକ୍କା ହକା,
ମୌସୁମୀ ଆସିଲା ବରଷା ଆସିଲା
ମଳୟ ମାଇଲା ଧକ୍କା ।୧।
ପ୍ରକୃତି ରାଣୀଟି ଯାଇଛି ମଉଳି
ବୈଶାଖୀ ତାଡ଼ନା ସହି
ତା' ଶାଖା ପ୍ରଶାଖା ଝରି ପଡ଼ିଅଛି
ଦୁଃଖେ ପଡ଼ିଛି ଝାଉଁଳି ।୨ ।
ମୌସୁମୀ ପରଶେ ହୁଏ ପଲ୍ଲବିତ
ବରଷା ରାଣୀର ଦେହ
ସମୟର ସୀମା କଲେ ଅତିକ୍ରମ
ଭାଙ୍ଗିଯାଏ ତାର ମୋହ ।୩।
ପଣତ ଉଡ଼ାଇ ଟ'ରିଯାଏ ପୁଣି
ଗନ୍ତବ୍ୟ ପଥକୁ ତାର
ଗାଉଥାଏ ନୀତି ମିଳନ ରାଗିଣୀ
ଦେହକୁ କରି ପଥର ।୪।
ବରଷା ରାଣୀର ରୁମୁଝୁମୁ ତାନେ
ଜଳେ ବିରହର ନିଆଁ
ଝିଂକାରୀ ବୁଢ଼ାର ଝିଂ ଝିଂ ଶବ୍ଦେ
ମନ ହୁଏ ଗହିରିଆ ।୫।
ମିଳନ ବିରହ ଶବ୍ଦ ଗଢ଼ି ହୁଏ
ବରଷାର ଆଗମନେ ॥
ପହିଲି ବରଷା ଯୋଡୁଥାଏ ସ୍ମୃତି
ବାଆ ବତାସ ପବନେ ।୬ ।
ଜୀବନ ମାଗଇ ପିଇବ ମଦିରା
ପାଖରେ ବସାଇ ସାଥୀ
ଏକାକୀ ଜୀବନ ରହଇ ଅଧୁରା
ବିଷମ ଲାଗଇ ରାତି ।୭ ।



ବର୍ଷା ଦେଖାଏ ସବୁଜ ସପନ
କଳା ନୀଳ ଆଖିଧାରେ
ମନ ବଗିଚାରେ ଫୁଟେ ଜାତି ଫୁଲ
ବାସ ଚହଟାଇ ଯିରେ ।୮।
ବୋହୂ ଭୂଆଷୁଣୀ ଗବାକ୍ଷ ଫାଙ୍କରେ
ଦେଖୁଛନ୍ତି ବସି ବସି
ବୁନ୍ଦା ବୁନ୍ଦା ଜଳ ଆସୁ ଅଭିମାନେ
ଫେରି ଯାଏ ହସି ହସି ।୯।
ଗହ୍ଣା ଦେଖି ଆସେ ମେଘର କନିଆ
ପିନ୍ଧି କଳା ଛିଟ ପାଟ,
ଶ୍ରାବଣର ହାତେ ବାନ୍ଧିଦେବ ରାକ୍ଷୀ
ହୋଇଅଛି କମ କୃଟ ।୧୦।
ରାକ୍ଷୀର ପାଉଣା ଦେବ ନିଶ୍ଚେ ଆଜି
ମେଘ କନ୍ୟାକୁ ଶ୍ରାବଣ,
ରାଧା କୃଷ୍ଣ ଦୁଇ ଯୁଗଳ ମୂରତି
ବସି ଝୁଲନ୍ତି ଝୁଲେଣ ।୧୧।
ମୌସୁମୀ ଆସିଛି ଫେରିଯିବ ଯିରେ
ଯିବା ଆସିବାର ବାଟେ
ଦୁଃଖ ସୁଖ ଦୁଇ ମିଳନ ରାଗିଣୀ
କହିଯିବ ବାଟେ ଘାଟେ ।୧୨।

*********



# ଜୀବନ ବୈଶାଖୀ

ବୈଶାଖୀର୍ ପ୍ରଚଣ୍ଡ ରୌଦ୍ରତାପରେ
ବାଟୋଇଟି ଚାଲୁ ଚାଲୁ
ଥକି ପଡ଼ିଛି ତା' ପାଦ
ରାସ୍ତା ସାରା ପଡ଼ିଛି ବିଛେଇ
ଭୟ ଆଶଙ୍କା ଓ ଉଦବେଗର୍ କଣ୍ଟା ସହ,
ଝାଞ୍ଜିପିଟି କରୁଛି ଶବଦ ।୧ ।
ମନେ ମନେ ଖୋଜୁଛି ସେ ଜଳର୍ ସାନିଧ୍ୟ
ମେଣ୍ଟାଇବ ଦିନ ଦିନ ତୃଷ୍ଣାତୁର୍ ଶୋଷ । ।
ଚାରିଆଡ଼ ଦେଖେ ଖାଲି ମରୁ ମରିଚିକା
ଶୁଭୁଅଛି ବୈଶାଖୀର୍ ଅଟ୍ଟ ଅଟ୍ଟହାସ ।୨ ।
ମନେ ଭରି କେତେ ଚିନ୍ତା
ପୌରୁଷର୍ ଅଭିମାନ ନେଇ
ଆଗକୁ ସେ ଚାଲିଅଛି ମାଡ଼ି
ସମାଜର୍ ଲେଲିହାନ ଅଗ୍ନିଶିଖା ନ ପାରିଣ ସହି,
ପଛରେ ତା' ସଂସାରକୁ ଯାଉଅଛି ଛାଡ଼ି ।୩ ।
ତା' ଜୀବନ ପ୍ରେମ ଆଉ ବିଶ୍ୱାସକୁ କରି ସନ୍ଦିହାନ
ପ୍ରତାରଣା କରିଛି ଧରିତ୍ରୀ,
ଲଜ୍ଜା ଆଉ ସଙ୍କୋଚକୁ କରି ମଥାନତ
ସାଜିଅଛି ନୀରବର୍ ମୂର୍ତ୍ତି ।୪ ।
ପ୍ରତ୍ୟାଶାର୍ ଦ୍ୱିପହର୍ ଜଳିଜଳି
ସରି ଯିବା ପରେ ଚେଉଁଛି ସେ
ନିର୍ଜନ ଓ ନିରୋଳା ରାସ୍ତାକୁ
ଶୁଭୁଅଛି ଦଣ୍ଡେ କ୍ଷଣେ ଠିଆ ହୁଅ,
ବାଟୋଇରେ କିଏ ଜଣେ କହୁଅଛି ତାକୁ ।୫ ।
ଚମକି ପଚାରେ କିଏ ତୁମେ ଅଜଣାହେ
ପଛରୁ ଧରନା ଭିଡ଼ି ରୁନ୍ଦ ନା ମୋ ପଥ,
ଭୋକ ଶୋଷ କ୍ଳାନ୍ତି ଭରା
ଶରୀରକୁ ନେଉଛି ଘୋଷାଡ଼ି
ଆଗକୁ ଯିବାକୁ ଅଛି ଅନେକ ମୋ ପଥ ।୬ ।
ନାହିଁ ନାହିଁ ଡ଼ାକ ନାହିଁ ତୁମେ ଆଉ ମୋତେ
ସମୁଦ୍ରର୍ ଢେଉ ପରି
ଜୀବନଟା ଭାବିଛି କି ସତେ ।୭ ।



ଜୀବନଟା ନୁହେଁ କେବେ ଶାମୁକାର୍ ଖୋଳ
ନୁହେଁ ସେହି ଅନୁରାଗ ବିରାଗର
ସଙ୍ଗୀତର୍ ସର,
ନିୟତିର୍ ଇଚ୍ଛା ଅନିଛାର୍ ବେଡ଼ି ପିନ୍ଧି,
ପାପପୂଣ୍ୟ ତଉଲୁଛି
ବିବେକର୍ ତରାଜୁ ରେ ବସି ।
ତୁମ ଡ଼ାକ ଘଡ଼ି ଘଡ଼ି ଚହଲାଏ
ମୋ ଆତ୍ମାର୍ ଅମୃତ କଳସୀ ।୮।
ଜାଣିନକି ତୁମେ ମହାକାଳ
ଲମ୍ବାଇଣ ତା' ପଣତ କାନି
କାହାକୁ ସେ ପଚାରେନି କିଛି
ଅହଂ ଗର୍ବେ ଦୁର୍ଯ୍ୟୋଧନ ମାନି ।୯।
ତୋଳିଦିଏ ଜୀବନ ଓ ଯୌବନର୍
ବୟସ ଶେ'ାଳୀ
ସମୟ ତା' ଦୂତ ହୋଇ ନେଉଅଛି ପୋଛି
ଦିନରାତି ଲୁଚକାଳି ଖେଳି ।୧୦ ।
କାନ ଡେ଼ରି ଶୁଣ ଯିରେ୍ ଭାସିଆସେ
ବହୁଦୂରୁ ବଇଁଶୀର୍ କରୁଣ ନିର୍ଯ୍ୟାସ
ଅନନ୍ତ ଲହରର୍ ଶୁଭେ ପ୍ରତିଧ୍ୱନି
ପ୍ରତି ଶବ୍ଦେ ସ୍ନେହଶ୍ରଦ୍ଧା
ଗଲେଣି ପ୍ରବାସ ।୧୧ ।
ମୁଣ୍ଡଝାଳ ତୁଣ୍ଡେ ମାରି
ତିଆରିଲି ଏ ଘର୍ ମନ୍ଦିର୍
ଅକ୍ଷୟ ବିହନ ବୁଣି ଲୁହ ଲୁହ ଢ଼ାଳି ଦେଇ
ହସେଇଲି ସବୁଜ କେଦାର୍ ।୧୨।
ମୋ କଳ୍ପନା ସପ୍ନର୍ ସଙ୍ଗୀତ ଆଜି
ସବୁ ମୂଲ୍ୟହୀନ
ସବୁଥାଇ କିଛିନାହିଁ
ଲାଗେ ଆଜି ସବୁ ଶୂନ୍ୟ ଶୂନ୍ୟ ।୧୩ ।
ଛାଡ଼ି ଦିଅ ପଥ ମୁହିଁ ବାଟର୍ ବାଟୋଇ
ମୋ ପଥରେ ସହଯାତ୍ରୀ ହେବ କିଏ ଆସ
ଯିବା ଆମେ ଗୀତ ଗାଇ ଗାଇ ।୧୪ ।

*********



# ବସନ୍ତ

ଦେଖୋଗୋ ସଜନୀ ବସନ୍ତ ଆସିଛି
ଶୁଭେ ଚତୁର୍ଦ୍ଦିଗେ କଳରୋଳ,
ତା' କର ସ୍ପର୍ଶରେ ହୁଏ ବିମୋହିତ
ଆନନ ସାଙ୍ଗରେ ନାଭି ମଣ୍ଡଳ ।୧ ।
ଶବ୍ଦ ପୁଞ୍ଜ ସବୁ କରି ଏକତ୍ରିତ
ଭାବ ଭାଷା ଲେଖୁଅଛି ବସି,
ସମୀରକୁ ପଠାଇଛି ସେ ଆଗରେ
ଜୀବନକୁ ଆଣିବାକୁ ଖୋଜି ।୨ ।
ଅମୃତ କଳସୀ ଧରିଣ ହାତରେ
ଆସିଛି ବସନ୍ତ ନିର୍ମଳ ହୋଇ
ରଙ୍ଗର ପସରା ଥୋଇଣ ମସ୍ତକେ
ୁଲ ସଖୀ ବୁଲେ ସାହି କି ସାହି ।୩ ।
ରଙ୍ଗ ମହୋତ୍ସବ କରିବ ମର୍ତ୍ତ୍ୟରେ
ରଙ୍ଗ ପିଚକାରୀ ଧରିଛି ହାତେ,
କାହାକୁ ପାଉନି ହୋଲି ଖେଳିବାକୁ
ସବୁରଙ୍ଗ ଢାଳେ ନିଜର ମାଥେ ।୪ ।
ଦେଖୁଛି ମଣିଷ ହୁଏ ପିଟାପିଟି
ସତେ ବା ଯାଇଛି ପାଗଳ ହୋଇ
ନିଜର ରକ୍ତରେ ଭିଜୁଛି ଶରୀର
ରକ୍ତର ଶ୍ରାବଣ ଯାଉଛି ବହି ।୫ ।
ଆଜିର ବସନ୍ତ ଦେଖୁଛି ଯେପରି
କାହାରି ଦେହରେ ଜୀବନ ନାହିଁ,
ସମସ୍ତଙ୍କ ପାଖେ ସବୁଅଛି ସିନା
କାହାରି ମନରେ ଆବେଗ ନାହିଁ ।୬ ।



ଭାବୁଛି ବସନ୍ତକୁ ତା ଜନ୍ମପରଠୁ
ପୃଥିବୀକୁ ଝଡ଼ ଆସିଅଛି,
ମାନବିକ ମୂଲ୍ୟ ହୋଇଣ ବିକ୍ଷିପ୍ତ
ଚାରିଆଡ଼େ ଛିଡ଼ିକି ପଡ଼ିଛି ।୭ ।
ବସନ୍ତର ଶଙ୍ଖ ସଙ୍ଗେ ସ୍ୱର ମିଶି
ଶୁଭୁଅଛି ଖାଲି ଛନ୍ଦହୀନ
'ଗୁଣର ରଙ୍ଗ ପଡ଼ିଅଛି' କା
ସତେ ଅବା ଦିଶୁଛି ଶ୍ରୀହୀନ ।୮।
ଏ ବସନ୍ତ ଏତେ ଦୁଃଖ ବଇଭବ ଧରି
ସାଙ୍ଗସାଥୀ ଆଣିଛି ସାଙ୍ଗରେ
ମୁହୂର୍ତ୍ତ ମୁହୂର୍ତ୍ତ ଧରି କରେ ଅନୁଭବ
ଦେହ ଆଉ ଦେହଲୀ ଭିତରେ ।୯।
ନୟନପନ୍ତାରେ ଅସରନ୍ତି ଲୁହ
ଆଖିତାର ଦିଶେ ରକ୍ତବର୍ଣ୍ଣ ।
ଦେଖୁଛି ସମୟ ଉଜୁଡ଼ି ପଡୁଛି
ବହୁବର୍ଣ୍ଣା ତା' ଫୁଲ ଅରଣ୍ୟ ।୧୦।
ଆମ୍ବ ଗଛେ ଆଉ ଧରୁନି ବଉଳ
ଶୁଭୁନାହିଁ କୋଇଲିର ସ୍ୱର
ଦେଶ ଭବିଷ୍ୟତ ଜାଣି ଅନିଶ୍ଚିତ
ସସାଗରା ଦୁଃଖ ରେ କାତର ।୧୧।
ଫୁଲକତେ ବସନ୍ତଟି ଆସିଥିଲା
ଗୀତ ଗାଇ ନୃତ୍ୟର ଛନ୍ଦରେ
ଦେଖିଥିଲା ମନେ କେତେ ସୁଖ ସପ୍ନ ଲୁଚିଗଲା କୁହୁଳା ମନରେ ।୧୨।
ପାଇବାର ଅଭିପ୍ସା ନରଖି ବାଣ୍ଟୁଥାଏ କେବଳ ସେ ଖୁସି
ଧସମୁଖୀ ତାଣ୍ଡବର ନୃତ୍ୟ ଦେଖି ଋତୁରାଜ କାନ୍ଦୁଅଛି ବସି ।୧୩।

*********



# ପାଷାଣ

ନିରବତା ଗ୍ରାସ କଲେ ମତେ
ମୋ ଭିତରେ ନିଜେ ହଜିଯାଏ
ନୟନରୁ ଝରେ ଯେଉଁ ଅଶ୍ରୁ
ସେ କୁହେ ନିତି ଭିଜୁଥାଏ ।୧ ।
ଜାଣି ଜାଣି ଆଜି ବୁଜିଦଏ ବୋଲିତ
ମୋ ଆଖିରେ ପଶେ ନାହିଁ ଧୂଳି
ଆଖି ଖୋଲୁ ଖୋଲୁ ପ୍ରତିଶିରା
ବାନ୍ଧିଦିଏ ଅଦୃଶ୍ୟ ଶିକୁଳି ।୨ ।
ଶିହରି ଉଠେ ମୋ ଦେହ
ଦୁଃଖ ଗ୍ଳାନି ଭରା ବିଷାଦରେ
ଘୋଟି ଆସେ କ୍ଳାନ୍ତିର ବଳୟ
ନିମଜ୍ଜିତ ହୁଏ ଯେତେବେଳେ ।୩ ।
ସମାଜର ନିଷ୍ଠୁର ଆଘାତରେ
କାହାକୁ ବା ଦୋଷ ମୁହିଁ ଦେବି
ଅର୍ଥଲୋଭୀ ସାର୍ଥନେଶୀ ସମାଜର
ତାଡ଼ନାରେ ନିତି ଷଢୁଥିବି ।୪ ।
ବର୍ଷା, ନଦୀ, ପୁଷ୍କରୀଣୀ
ସମୁଦ୍ର ଝରଣା
କେ କାହାଠୁ ନୁହେଁ ଭିନ୍ନ
ସମସ୍ତେ ଆପଣା ।୫।
କାହା ପାଇଁ କରେ ମୁଁ ଅପେକ୍ଷା
ଦୁଆର ମୋ ରଖିଥାଏ ମେଲା
ଆକାଶର ଇନ୍ଦ୍ରଧନୁ ବର୍ଣ୍ଣ ବିଭା ତାର
ଦିଶେ ହୋଇ କେଡ଼େ ବିଲିବିଲା ।୬ ।
ହେଇ ଦେଖ 'ଟିଛି ସିନ୍ଦୁରା ଏବେ
କିଛି କ୍ଷଣେ ଆସିବ ଗୋଧୂଳି
ଧରା ବକ୍ଷେ ଜ୍ୱଳନ
ଆସି ପିରେ ପଡ଼ିବ ମଉଳି ।୭ ।



ଆକାଶ ଉଷ୍ଣତା ଭରେ
ଚନ୍ଦ୍ର ସୂର୍ଯ୍ୟ କର କିରଣରେ
ଶୂନ୍ୟତାକୁ ବାଣ୍ଟେ ଅନ୍ତର୍ଦାହ
ନିଜେ ନିଜ ଆତ୍ମ ପ୍ରତ୍ୟୟରେ ।୮।
ଦିବା ସ୍ୱପ୍ନେ ଦେଖେ ପଦ୍ମ ବନ
ରଚେ ସେଠି ପ୍ରଣୟର କୁଞ୍ଜ,
ନିଦ ଶେଷେ ଦେଖେ ମୁଁ ପଲାଶ । ।
ସପନ ମୋ ହୋଇଯାଏ ସଞ୍ଜ ।୯।
ଧରଣୀରେ ମହକ ନଥାଇ
ଆକାଶଟା ଦିଶେ ପୂର୍ଣ୍ଣଗର୍ଭା
ମାଟିତଳୁ ଆସେ ପୋଡ଼ା ଗନ୍ଧ
ଶାଗୁଣାଙ୍କ ବସିଅଛି ସଭା ।୧୦।
ସବୁଠାରୁ ସୁଖୀ ପକ୍ଷୀ ଜନୁ
କୁଟା କାଠି ବାନ୍ଧି ଗଢ଼େ ନୀଡ଼
ଦୁଃଖ ସୁଖ ନ ଜାଣଇ କିଛି
ଭାବେ ମୁହିଁ ସବୁଠାରୁ ବଡ଼ ।୧୧ ।
ଯାହାକୁ ମୁଁ ଭାବଇ ନିଜର
ସେ ରୁହଇ ମୋଅ ଠାରୁ ଦୂରେ
ଯାହାକୁ ମୁଁ ମଣଇଟି ପର
ସେ ଦିଶଇ ମଝି ଦୁଆରରେ ।୧୨ ।

*********



# ମହାକାଳ କିଏ ?

କଠିନ ତରଳ ପରି
ଜୀବନର ପ୍ରବାହଟି ଚାଲିଥାଏ ନିତ୍ୟ
କେ କହିବ ମହାକାଳ କିଏ
ଯା ପ୍ରବାହ ଚିରନ୍ତନ ସତ୍ୟ ।୧ ।
ତା ନିର୍ଦ୍ଦେଶେ ଚାଲଇ ସଂସାର
ଦୁଃଖ ସୁଖ ଆଲୁଅ ଅନ୍ଧାର
ଥୁଣ୍ଟା ଗଛେ ଫୁଟଇ କୁସୁମ
କଅଁଳଇ ସବୁଜ ପତର ।୨।
ଆଖିର ପଲକ ମାତ୍ରକେ
ସସାଗରା ହୋଇଯାଏ ସ୍ଥିର
ଘୂର୍ଣ୍ଣର ସାଥୀ ମଳୟର
ଗତିପଥ ହୋଇଯାଏ ଧିର ।୩ ।
ଫୁଟିଥିବା ସକାଳର ଫୁଲ
ସଞ୍ଜବେଳେ ମଉଳି ପଡ଼ଇ
ସକାଳର ହସକୁରା ମୁହଁ
ସନ୍ଧ୍ୟା ବେଳେ ଜଳେ ତାର ଜୁଇ ।୪ ।
ତା ଉପରେ କରି ମୁଁ ରିସର୍ଜ
ସମୟ ମୋ ଯାଏ ସରିସରି
କବିତା ମୁଁ ପାରେ ନାହିଁ ଲେଖି
ଶବ୍ଦ ପୁଞ୍ଜ ପଡ଼େ ନାହିଁ ଝରି ।୫ ।
ଏବେ ଆଉ ନାହିଁ ସ୍ୱପ୍ନ
ନାହିଁ ଆଉ କାହାକୁ ପ୍ରତୀକ୍ଷା
ଶାନ୍ତି ମୋର ଯାଇଅଛି ହଜି
ଥକ୍କା କ୍ଲାନ୍ତି ନେଇଅଛି ଦୀକ୍ଷା ।୬ ।



ମନେ ପଡ଼େ ବୁଢ଼ୀମା କାହାଣୀ
ଭିନ୍ନ ଭିନ୍ନ ଚମତ୍କାର କଥା
ଅତୀତର ସ୍ମୃତି ଆଣେ ଟାଣି
ଭାବନାଟା ଦିଏ ବହୁ ବ୍ୟଥା ।୭ ।
ଅସୁମାରୀ କାହାଣୀର ଫୁଲ
ଝରିଯାଏ ବୁଢ଼ୀମା ଓଠରୁ
ମହାକାଳ ଗୋପନ ରହସ୍ୟ
ବାହାରେନି 'ରୁଆ ଭିତରୁ ।୮।
ଅନାରତ ପାଦଶବ୍ଦ ଖାଲି
ଶୁଭେ ଆସି ମୋର ଦୁଇ କାନେ
ଅଦୃଶ୍ୟରୁ ବଢ଼ାଏ କେ ହାତ
ଦିଶେ ମୋର ଜୀବନ ସାୟାହ୍ନେ ।୯।
ଭୟ ଆଉ ଆଶଙ୍କା ମିଶାଇ
ମୁଦି ହୋଇଯାଏ ମୋର ଆଖି
ବିଦାୟର ଲଗନ ପାଳନ୍ତି
(କିନ୍ତୁ) ପଥ ପ୍ରାନ୍ତେ କେ ନୁହନ୍ତି ସଖି ।୧୦।
ଦିନ ଲିପି ହୋଇଅଛି ଲେଖା
ମୋ ହୃଦୟ ଧଳା କାଗଜରେ
ବାହୁନିବା ଲାଭହେବ କିସ
ଜୀବନର ଗୋଧୂଳୀ ବେଳାରେ ।୧୧ ।
ଦେଖୁଥିଲି କେତେ କେତେ ସପ୍ନ
ସତେ ଅବା ଯାଉଅଛି ପୁରି
ଲକ୍ଷ୍ୟ ସ୍ଥଳେ ପହଁଞ୍ଚିବା ପରେ
ମନ ମୋର ଉଠିବ କୁରୁଳି ।୧୨ ।

*********



# ଶାରଦୀୟ ସନ୍ଧ୍ୟା

ଜହ୍ନି'ଲ୍ ତୋ'। ଦିଶେ ଜହ୍ନର୍ ଆଲୋକେ
ଗାଆଁ ସାରା ହୁଏ ଆଲୋକିତ
ଚନ୍ଦ୍ର କର୍ ସ୍ପର୍ଶ ପାଇ
ରଙ୍ଗ 'ୁଲ୍ କଇଁରାଣୀ
ପୁଲକରେ ହୁଏ ଆକର୍ଷିତ ।୧ ।
ନୂଆ ବୋହୂ ବସଇ ବିରସେ
ପତିତା'ର୍ ଯାଇଛି ପ୍ରବାସେ
ଜ୍ୟୋତ୍ସ୍ନା କରେ ହୋଇ ବିମୋହିତ
ଲୋଟେ ଶେଯେ ସେ ବିରହୀ ବସେ ।୨ ।
ନଇପଠା ବିଲ୍ ପାଟବଣେ
ହସେ ନିତି କାଶତଣ୍ଡୀ 'ୁଲ୍
ଆକାଶଟା ନୀଳ ସିନା ଦିଶଇ ନିର୍ମଳ
ସତେ ଅବା ସମୁଦ୍ରର୍ ଜଳ ।୩ ।
ବେହେରଣ ହୋଇ ନୀଳଶାଢ଼ୀ
ହସୁଅଛି ସବୁଜ କେଦାର୍
ବର୍ଷ ମାସ ସବୁ ଋତୁ ଫଧିଆ ଭିତରେ
ଶାରଦୀୟ ଫଧ୍ୟାଟି ସୁନ୍ଦର୍ ।୪ ।
ଶ୍ରାବଣର୍ ଫଗୀତରେ ହୋଇ ଆକର୍ଷିତ
ବହିଯାଏ ତଟଧାର୍ ପାଶେ
ଶାରଦୀୟ ଫଧ୍ୟା ବେଶ ଦିଶେ କଳାଧଳା
ଆକାଶଟା ନୀଳ ନୀଳ ଦିଶେ ।୫ ।
ଆକାଶଟି କରେ ଅଭିମାନ
ସାଗରର୍ ଗଭୀର୍ ପରାଏ
ଚତୁର୍ଦ୍ଦଗେ ବଳୟର୍ ଶିଖା ଦିଶେ
'ୁଲ୍ ଫଜ ନଇଁ ନଇଁ ଯାଏ ।୬।



ପୂର୍ବାଶାର ବର୍ଣ୍ଣବିଭା କରେ ବିମୋହିତ
ଇନ୍ଦ୍ରଧନୁ ଲୁଚିଯାଏ ଲାଜେ
କୁମ୍ଭାଟୁଆ ମୟୂରର ସ୍ୱର ଶୁଭେ
ସତେ ଅବା କେନ୍ଦେରାଟେ ବାଜେ ।୭ ।
ଭାଦ୍ରବରେ ଓଷେଇଡି ସବୁ ଓଷା ପୂଜି
କୃଷ୍ଣ ଜନ୍ମ ପରବରେ ଭୋଳ
ମରତକୁ ମହାମାୟା କରୁଛନ୍ତି ବିଜେ
ଚତୁର୍ଦ୍ଦିଗ ଦିଶଇ ଉଜ୍ଜ୍ୱଳ ।୮ ।
ଅସ୍ତଗାମୀ ହେଲେ ଛାୟାପତି
ମନ୍ଦିରରେ ବାଜେ ଘଣ୍ଟଘଣ୍ଟା
ସଞ୍ଜବେଳେ ସଞ୍ଜବତୀ ଦିଏ ବୋହୂରାଣୀ
ତା' ନଣନ୍ଦ କହେ କେତେ ଛଟା । ।୯।
ଶରତରେ ଆସିବେ ଶାରଦା
ବିଲ ପାଟ କରେ ନିଉଛାଳି
ହରିବୋଲ ହୁଳ ହୁଳି ଶୁଭେ
ଘଣ୍ଟଘଣ୍ଟା ବାଜଇ କାହାଳୀ ।୧୦ ।
ଆସିଯାଏ କୁମାର ପୂର୍ଣ୍ଣିମା
ଶୁଭେ ୍ଲ ବଉଳ ବେଣୀ
କୁମାରୀଏ ନାଚ ଗୀତେ ହୋଇ ବିମୌହିତ
ଦେଖାଅନ୍ତି କେତେ ଠାଣିମାଣି ।୧୧।
ସବୁ ଋତୁ ମାସ ଦିନ ଆସଇଟି ସନ୍ଧ୍ୟା
କେତେବେଳେ ଯାଏସେ ପଳାଇ
ସବୁଠାରୁ ଶାରଦୀୟ ସନ୍ଧ୍ୟାଟି ସୁନ୍ଦର
ଦେହ ମନ ଦିଏ ଚମକାଇ ।୧୨ ।

*********



# ଭଉଁରୀ

ପାହାନ୍ତିଆ ସପ୍ନ ଦେଖି
ମଣିଷ ବିଳି ବିଳେଇଲା ପରି
ସମୟର ଓଠରେ ହସର ଭଉଁରୀ
ଘୁରି ବୁଲେ ହୋଇଣ ଏକାନ୍ତ
ଦୂରରୁ ସଙ୍ଗୀତର ସ୍ୱର
ଭାସି ଭାସି ଆସିଲା ପରି
ସୁଖ ଦୁଃଖର ସ୍ମୃତି ସବୁ,
ଯେତେବେଳେ ଶବ୍ଦ ଆକାରରେ ଏକାଠି ହୁଅନ୍ତି
ସେତେବେଳେ ପାଲଟି ଯାଆନ୍ତି ଏକ ଗ୍ରନ୍ଥ ।।
ସେହି ଦୂର ସଂଗୀତର ମୂର୍ଚ୍ଛନାରେ
ମେଘ ମହ୍ଲାର ଓହ୍ଲାଇ ଆସିଲା ପରି,
ଚାରିଆଡ଼େ ପ୍ରସ୍ଫୁଟିତ ହୁଏ ଫୁଲର ସମ୍ଭାର ।
ସେହି ଫୁଲ ସୁଗନ୍ଧରେ ବାଉଳା ହୋଇ
ପ୍ରଜାପତି ଓ ଭଅଁର ମୟୂର ପୁଚ୍ଛ ଭଳି
ଡେଣା ଟେକି ଟେକି ନାଚି ଏଭଳି ଉଠନ୍ତି ଯେ
ସତେ ଅବା ଲଗେଇଛନ୍ତି ଦି ମାଳେ ଘୁଙ୍ଗୁର । ।
ଡେଣା ମେଲି ପକ୍ଷୀ ଦେଖେ ସପ୍ନ
ସ୍ମୃତି ସବୁ ଆସୁଛି ବଉଳି
ବିସ୍ମୃତିରେ ହଜାଏ ନିଜକୁ
ସପ୍ନ ଭାଙ୍ଗି ଖାଏ ସେ ହାଉଳି । ।
ଋତୁ ପରେ ଋତୁ ଯାଏ ଚାଲି
ନାଲି ନେଳି ସବୁଜ ଖେଳାଇ
ଶରୀରରୁ ଆତ୍ମା ଯାଏ ଚାଲି
ମାଟି ପିଣ୍ଡ ମାଟିରେ ପକାଇ । ।



ଅନ୍ଧକାର ନିସ୍ତବ୍ଧ ରାତିରେ
ଜଳେ ନିଆଁ ବର୍ଣ୍ଣିଳ ଶୋଭାରେ,
ଲୁହର ସାଗର ଭିତରେ ଆସୁଥିବା ଜୁଆରଟି
ପିଟି ହୁଏ ମନର ବେଳାରେ । ।
ଆକାଶର ତାରା ଆଖି ହୁଏ ମିଟି ମିଟି
ଜହ୍ନ ଓଠେ ମୃଦୁକୁନ୍ଦ ହସ
ସମୟ ତା' ହାତ ଧରି ଟାଣି ଟାଣି
ନେଇଯାଏ ଅନାରତ ଦେଶ । ।
ଗୋପନରେ ଦରଜାରେ ଡାକେ
ନାହିଁ ତା'ର ସୀମିତ ବୟସ,
ଡର ଭୟ ଆଶଙ୍କାରେ ରହିଥିବା ମଣିଷର -
ପ୍ରତୀକ୍ଷାଟି, ନିମିଷେକେ ହୋଇଯାଏ ଶେଷ । ।
ଦୀପାଳୀର ଆଲୋକରେ ହୋଇ ଆଲୋକିତ
କଟିଯାଏ ନିରନ୍ନ ଅନ୍ଧାର
ସତେ ଅବା ଉଷାରାଣୀ ପାଛୋଟି ନଉଛି
ଆସୁଥିବା ସୁନ୍ଦର ସକାଳ । ।
ଚିନ୍ତା ସାଗରରେ ପଶି
ବୁଡିଯାଏ ବିବେକ ଓ ଜ୍ଞାନ
ଅରଣ୍ୟର ଅଜଗର ପ୍ରାୟେ
ଭୁଲିଯାଏ ସତେ ଏ ଜୀବନ ।

*********



# ସଂପର୍କ

ସଂପର୍କର ସରଦ୍ରବ ନାହିଁ ତା'ର ଅନ୍ତ,
ସମୁଦ୍ରଠୁ ଗହୀରିଆ ନଭ ପରିବ୍ୟାପ୍ତ ।।
ସଂପର୍କର ସୁଦୃଢ଼ ରଜ୍ଜୁରେ ଜୀବନଟି ହୁଏ କ୍ରୀୟାଶୀଳ,
ସଂପର୍କର ଡ଼ୋରି ଗଲେ ଛିଡ଼ି
ଜୀବନଟା ଜଳେ ଦୁଃଖାନଳ ।।
ସମୟର କଷଟି ପଥରେ
ମୁହୂର୍ତ୍ତଟି ହୁଏ ପରିବ୍ୟାପ୍ତ
ଅବିଶ୍ୱାସ ସନ୍ଦେହ ଘେରରେ
ସଂପର୍କଟି ହୁଏ ସଙ୍କୁଚିତ ।।
ସଂପର୍କର ତାଜ୍ ବଢ଼େ ମହଲ ଗଢ଼ିଲେ
ଅହଂକାର କଲେ ପରିତ୍ୟାଗ
ମୁହୂର୍ତ୍ତଟି ବଢ଼ିଟାଲେ ମହତକାଂକ୍ଷାରେ
ପଥପ୍ରାନ୍ତେ କଲେ ସତସଙ୍ଗ ।।
ଝରା ସେ'ାଳିର ବାସନାରେ
ଲିଭିଯାଏ ନିଦାଘର ଗୁଣ,
ବେଳେ ବେଳେ ମାଳତୀର ପାଖୁଡ଼ାରୁ
ହଜିଯାଏ ବାସନ୍ତୀ 'ଗୁଣ ।।



ବାଲି ଧୂଳି ଖେଳ ଘର ପରି
ସଂପର୍କର ନିବିଡ଼ତା କେବେ ଦିଅ ଭାଙ୍ଗି
କେବେ ପୁଣି ଏ ମନକୁ ଦିଅ ଚମକାଇ
ସ୍ୱର ଦିଅ ବଂଇଶୀରେ ଫୁଙ୍କି ।
ଭାବି ଭାବି ଭାବନାର ସୀମାପାର ହେଲାପରେ
ଆଉ ଏକ ଭାବନାକୁ ଦିଅ ମନେ ଖଞ୍ଜି
ଭାବନାର ସମୁଦ୍ରରେ ବୁଡ଼ିଯାଇ
ତଳକୁ ତଳକୁ ଯାଏ ମୁହିଁ ହଜି ।
ଧନଜନ ଗୋପଲକ୍ଷ୍ମୀ ସବୁ ଅଛି ମୋର
କିଛି ପୁଣି ନାହିଁ,
ନୀରବରେ ପଚାରେ ନିଜକୁ
ଜୀବନକୁ ଲଗାଏ ମୁଁ ବାଜି
ହନ୍ତସନ୍ତ ହୋଇ କାହାପାଇଁ । ।

*********



# ବିଶ୍ଳେଷଣ

ଚେତନା ଅବଚେତନାରେ
ନିଜକୁ ମୁଁ ସଂଗୋପିତ କରି
ମନକୁ ମୋ କରେ ବଶ୍ଳେଷଣ । ।
ଯବନିକା ଜଟିଳ ସୂତ୍ରର ଅଙ୍କ
ହରଣରେ ଛିଣ୍ଡେ ନାହିଁ
କରେ ଖାଲି ମିଶାଣ ଫେଡ଼ାଣ । ୧।
ଲୋଭ ପୂର୍ଣ୍ଣ କଳସୀରୁ
ମାୟାଜଳ ଶୋଷିନିଏ
ଭିତରଟା ଦେଖାଯାଏ ଖାଲି
ଋତୁ ଚକ୍ର ଆବର୍ତ୍ତମାନରେ
ମଳୟଟା ଖେଳେ ଲୁଚିକାଳି ।୨।
ସମୟର ବାହୁ ବନ୍ଧନରେ
ମୋ ମନକୁ ଦିଏ କେ ଉଡ଼ାଇ ।
ଆଖି ମୋର ଖୋଜେ ତାକୁ ଯେତେ
କେବେ ହେଲେ ଦେଖିପାରେନାହିଁ ।୩ ।
ସନ୍ଦେହର କୁହେଳି ଭିତରେ
ଏ ସମାଜ କହେ କେତେ କଥା,
ସେ ସମ୍ଭାର ଦିଏ ଟୋପାଡ଼ଇ
ହୃଦୟରେ ଚାପିଦିଏ ବ୍ୟଥା ।୪ ।



ନାଲିନେଳି ଶୁଆପକ୍ଷୀଟିର
କଥା କୁହା ଭାବ ଭଙ୍ଗୀଦେଖି
ରଖିବାକୁ ହୁଏ ମନ ପଞ୍ଜୁରୀ ଭିତରେ
ଈଶ୍ୱରଙ୍କୁ ରଖି ରାଜସାକ୍ଷୀ ।୫ ।
ମନ ଆଖି ଖୋଜୁଥାଏ ମୋର
ଗଛପତ୍ର ଆକାଶ ବକ୍ଷରେ
କାହାକୁ ମୁଁ ପାଏ ନାହିଁ ଖୋଜି
ଛପିଯାଅ କେତେ ଯୋଜନରେ ।୬ ।
ସ୍ମୃତି ଶିଶୁ ଜନ୍ମ ନିଏ ନୂଆ ରୂପ ନେଇ
ଆବର୍ତ୍ତିତ ଆବେଗମୟରେ,
ଯୌବନ ତା ପଲ୍ଲବଇ ଚନ୍ଦ୍ରାର୍କିତ ସମ
ମନ ବୃକ୍ଷ ଶାଖା ପ୍ରଶାଖାରେ ।୭ ।
ଶବ୍ଦଟିଏ କଲେ ଗୁଞ୍ଜରଣ
କାନେ ଶୁଭେ ସୁମଧୁର ବାଣୀ
ସତେ ଅବା 'ଲରାଣୀ ପାଖୁଡ଼ା ଝରାଇ
ଗାଉଥାଏ ମିଳନ ରାଗିଣୀ ।୮ ।
ଆଶା ନିରାଶାର ସନ୍ଧିକ୍ଷଣରେ ଭାସୁଥାଏ
ସଂସାରର ସାଗର ମଧ୍ୟରେ
(ତଥାପି) ନହାରିବି ଖୋଜୁଥାଏ କାହାକୁ ମୁଁ ନିତି
ଜୀବନର ବଳୟ ଭିତରେ ।୯ ।

*********



# ଜୀବନ ତତ୍ତ୍ୱ

ଶୁଆଶାରୀ ଦୁହେଁ ବସି ଗଛ ଡ଼ାଳେ
ହେଲେ ଦୁଃଖ ସୁଖ ମଧୁର କଥା,
ଶାରୀ କହେ ଶୁଆ ମୁହଁକୁ ଅନାଇଁ
କହ ସଖା କିଛି ଜୀବନ ଗାଥା ।୧ ।
ଶୁଆ କହେ ଶାରୀ ଭଲ ପ୍ରଶ୍ନଟିଏ
ପଚାରିଲୁ ଆଜି ଭାବିଣ ମୋତେ,
ଜୀବନର ତଥ୍ୟ ଜାଣିଛି ଯେତିକି ଶୁଣିଯା
କହିବି ଆଜି ମୁଁ ତତେ ।୨ ।
ସାଗର ବେଳାରେ ଖୋଜୁଥିଲି ଶଙ୍ଖ
ହାତରେ ପାଇଲି ଶାମୁକାଟିଏ,
ସଂସାର ଭିତରେ ଖୋଜୁଥିଲି ସାଙ୍ଗ
ଶେଷରେ ପାଇଲି ମୁଁ ସାଥୀଟିଏ ।୩ ।
ଜୀବନ ଯୁଆରେ ଖୋଜୁଥିଲି ପ୍ରେମ
ମନ ହଜିଗଲା ପବନେ କାହିଁ
ମନ ଅରଣ୍ୟରୁ ଖୋଜୁଥିଲି ଲତା
ତାକୁ ମୋ ହୃଦୟ ଚାହିଁଲା ନାହିଁ ।୪ ।
ଫୁଲ ବଗିଚାକୁ ଫୁଲ ତୋଳିଗଲି
ଦେହରେ ଲାଗିଲା ଯେତେକ କଣ୍ଟା
କର୍ତ୍ତବ୍ୟ କରି ମୁଁ ପ୍ରଶଂସା ବଦଳେ
ନିତି ଶୁଣୁଥାଏ ସବୁରି ଖୁଣ୍ଟା ।୫ ।



ଉପକାର କରି ଉପକାରୀଠାରୁ
ପାଇଲିନି ଟିକେ ମୁଁ କୃତଜ୍ଞତା
ନରମ ହୋଇଲି ଯାହା ପାଖେ ମୁହିଁ
ବଦଳେ ପାଇଲି ମୁ ଉଦ୍ଧାମତା ।୬ ।
ଖାଦ୍ୟ ଅନ୍ୱେଷଣେ ଗଲି ବନ୍ଧୁଘର
ଦେଖି ଦୁଆରକୁ ବନ୍ଦ କରିଲେ,
ଶୋଷ ମେଣ୍ଟିବାକୁ ଚାହିଁଲି ଆକାଶେ
ବରଷା ବଦଳେ ଝାଞ୍ଜିପିଟିଲେ ।୭ ।
ହସ ଖୁସି ଟିକେ ଖୋଜିଲେ ରାସ୍ତାରେ
ସବୁଯାକ ଦୁଃଖ ଆଖିରେ ଦିଶେ,
ମନ ପରି ମନ ପାଇଲିନି ଖୋଜି
ଘରକୁ ଫେରିଲି ହୋଇ ନିରାଶେ ।୮ ।
ଭୁଲିଯିବି ବୋଲି ଲେଖିଲି କାଗଜେ
ଉଡ଼ି ଉଡ଼ି ଗଲା ସେ ବହୁ ଦୂରେ,
ନ ହଜିବା ପାଇଁ ରଖିଛି ସାଇତି
ମୋ ମନ ହୃଦୟ ଶିଳା ଲିପିରେ ।

*********



# ଅଳସୀ କନ୍ୟା

ସପନ ବିଳାସୀ ଅଳସୀ କନ୍ୟାଗୋ
କଳ୍ପନା ମହଲେ ବସି
କାହିଁ କେତେକାଳୁ କରିଛି ଅପେକ୍ଷା
ଅଟେ ଦର୍ଶନା ଭିଳାସୀ ।୧ ।
ଜହ୍ନରାଇଜର ରାଜକୁମାରୀ ଗୋ
ତୁମେ ମୋ ଆଖିର ତାରା
ପରୀ ରାଇଜର ସପନ କୁମାରୀ
ନାଆଁଟି ତୁମର ଧାରା ।୨ ।
ବରଷା ରାତିର ଝୁମୁଝୁମୁ ତାଳେ
ତୁମେ ମୋ ନୃତ୍ୟ ମୟୂରୀ
ସପନ ସାଗରେ ନୀଳ ମାଛ ହୋଇ
କାଟୁଥାଅଟି ଭଉଁରୀ ।୩ ।
ତୁମ ମୁଖ ଦେଖି ଜହ୍ନ ଯାଏ ଲୁଚି
ବାଦଲର ବେଳା ଭୂମିରେ
ତୁମ ଆଖି ତାରେ ଆକାଶର ତାରା
ଲୁଚିଯାନ୍ତି ଖରତରେ ।୪ ।
ତୁମ ରୂପ ଗନ୍ଧେ ଫୁଲ ନ ଫୁଟଇ
ସରୋବରେ ପଦ୍ମ କଇଁ
ତୁମରି ଜ୍ୟୋତିରେ ସୂର୍ଯ୍ୟ ନ ଦିଶନ୍ତି
ଆକାଶଟା ଦିଶେ ଛାଇ ।୫ ।



ତୁମେ ଥିଲେ ପାଶେ ଦିଗବଳୟ ଆସେ
ନଇଁ ନଇଁ ଦିଗନ୍ତକୁ
ନଇଁ ଯାଏ ଧାଇଁ ମିଶାଇ ଦେବାକୁ
ସାଗର ବକ୍ଷେ ନିଜକୁ ।୬ ।
ଭଲ ପାଇବାର ଲୁହ ଲହୁ ଦେଇ
କଲି ପ୍ରିତି ବିକିରଣ
ନିଷିଦ୍ଧ ହୋଇଲା ନପାରିଲି ଭେଦି
ସବୁ ହେଲା ଅକାରଣ ।୭ ।
କଳ୍ପନା ମହଲେ ସପନ ଶେଯରେ
ଲେଖୁଥିଲି ପ୍ରେମ ପତ୍ର
କଳାକାର ହୋଇ ଆଙ୍କୁଥିଲି ବସି
ତୁମ ରୂପ ପଟ୍ଟଚିତ୍ର ।୮ ।
ଯେତେ ସବୁ ଇଚ୍ଛା ଧରିଲି ଜଡ଼ାଇ
ହେଲା ସବୁ ଅସମ୍ପୂର୍ଣ୍ଣ
ଆକାଶର ଆଶା ମୋ ମନର ଭାଷା
ନିମିଷେ ହୋଇଲା ଲୀନ ।୯ ।
ଜୀବନର ରାସ୍ତା ବିପଦ ସଂକୁଳ
ଯାଏ ଅଙ୍କେଇ ବଙ୍କେଇ
ଆୟତ ନକରି ରହିଗଲି ଯିରେ
ଅଭିମାନୀ ଟିଏ ହୋଇ ।୧୦।

*********



# ସପ୍ନ ସୁନ୍ଦରୀ

ଆଖି ବୁଜିଲେ ସପ୍ନ ସୁନ୍ଦରୀ ସଜବାଜ ହୋଇ
ଧଡ଼କିନା ପାଖରେ ଆସି ବସିଯାଏ
ତା ରାଜ୍ୟରେ ନିଜର କିଛି ହଜିଯାଏ ତ
କେବେ ପ୍ରିୟ ଜିନିଷ ପାଇ ହୋଇଯାଏ ।୧ ।
ସପନରେ ଦେଖେ ବେଳେ ସତେ ଯେମିତି
ଜ୍ୟୋତ୍ସ୍ନା ବିଧୌତ ଆକାଶରୁ ରୂପବତୀ -
ତାରକା ପୁଞ୍ଜ ଖସି ଖସି
ମୋ ଚାରିପଟେ କରୁଛନ୍ତି ନୃତ୍ୟ,
ଦେଖେ କେବେ ବହଳ ଅନ୍ଧାର ରାତିରେ
ଫୁଲ ସବୁ ବିଛାଡ଼ି ହୋଇ
ପ୍ରକାଶନ୍ତି ସେମାନଙ୍କ ସୌଗନ୍ଧର ସତ୍ୟ ।୨ ।
ସପନରେ ବେଳେ ବେଳେ ଦେଖେ ମୁଁହିଁ
ନଈଟିଏ ହୋଇ ବହି ଯାଉଛି
ଦୁଇ ଆଖିର ଦୁଇ ପତା ଧାରେ କେତେବେଳେ
ଏ କୂଳରେ ବା ସେ କୂଳରେ,
ମାଜୁଛି ପାଦର ପାଉଁଜି ବସି ଓଠର ତୁଠରେ ।୩।
ମୋ ଭିତର କିଶୋରୀଟି କଳକଳ ଝରଣାଟି ପରି
କେତେବେଳେ ନାଚୁଥାଏ ତ
କେତେବେଳେ ଗାଉଥାଏ
କେତେବେଳେ ମତୁଆଲୀ ହୋଇ
ମନର ଢ଼ଳକୁ ଛୁଇଁ ଦେଉଥାଏ
ତ କେଉଁଠି ନିଜକୁ ଭିଜାଉଥାଏ ।୪ ।
ସପନରେ ଭାସୁଥିବା ବେଳେ ସବୁକିଛି
ଲାଗେ ଚିହ୍ନା ଚିହ୍ନାତ କିଛି ବି ଅଚିହ୍ନା,
ସପନର ମହୁଆ ନିଶାରେ
ଭାବନାର ବଗିଚା ଭିତରେ
ନିତିପ୍ରତି ହୁଏ ବାଟବଣା ।୫।
ସପ୍ନ ଯେବେ ଯାଏ ଭାଙ୍ଗି
ମୁଜା ଆଖି ଖୋଲିଯାଏ ମୋର
ଦେଖେ ପାଶେ ବସିଛି କବିତା
ଶବ୍ଦପୁଞ୍ଜ କରି ଗଳାହାର ।୬ ।

*********



# ନବବର୍ଷ

ନବବର୍ଷ ନୂଆଆଶା ମନରେ ସଞ୍ଚରି
ସ୍ନେହ ଶ୍ରଦ୍ଧା ଢ଼ାଳଦିଅ ହୃଦୟେ ସବୁରି
ବାଦ୍ୟଯନ୍ତ୍ର ବାଜିଉଠୁ ତୁମ କରୁଣା ମୂର୍ଚ୍ଛନା ସଙ୍ଗେ ।।
ଆବାହନୀ ଗୀତି, ନୂତନ ଓ ପୁରାତନେ ନାହିଁଟି ପ୍ରଭେଦ
ଖାଲି ଯାହା ଖେଳ ରାଜନୀତି ।।
ଦିନ ରାତି ସଞ୍ଜ ଓ ସକାଳ କିଛି ବଦଳିନି
ଚାଲୁଅଛି ନିୟତି ନିୟମେ
ସୂର୍ଯ୍ୟ ଚନ୍ଦ୍ର ଖରା ବର୍ଷା ସବୁ ତାଙ୍କ ବାଟେ
ମନ ଖାଲି ଝୁଣ୍ଟୁଅଛି ପ୍ରକୃତିର ଭ୍ରମେ ।।
ତଥାପି କରେ ମିନତି ନବବର୍ଷ ଆସଏ ଧରାକୁ
ହାତେ ଧରି ଆଲୋକ ଦୀପାଳୀ
ଆଲୋକିତ ହେଉ ଧରାଧାମ
ହସ ଫୁଟୁ ଓଠରେ ସବୁରି ।।
ଦଙ୍ଗା ହଙ୍ଗା ନରହତ୍ୟା ଧର୍ଷଣ କର୍ଷଣ
ବିସ୍ଫୋରଣ ଭ୍ରୁଣ ହତ୍ୟା ଧୋକ୍କାଓ ଲୁଣ୍ଠନ,
ସ୍ମୃତିର ସମୁଦ୍ରେ ଭାସୁ ସବୁ ଭିଜି ଭିଜି
ପୁରାତନ ଗର୍ଭ ମଧ୍ୟେ ସବୁ ଯାଏ ଲୁଚି ।।
ଜନତାର ଚଲାପଥେ ହେଉପୁଷ୍ପ ବୃଷ୍ଟି
ପଞ୍ଚ ଅଷ୍ଟଗ୍ରହକୂଟ ଆପେ ଯାଉ କଟି
ଉଭୟଙ୍କ ଆଲିଙ୍ଗନେ ବିଦାୟୀ ସ୍ୱାଗତେ
କିସମ କିସମ ସାକ୍ଷୀ ରହିଛନ୍ତି କେତେ ।।



କୁହା ଅକୁହା ଶବ୍ଦପୁଞ୍ଜ ହୃଦୟରେ ଦିଅ ନିଆ ହୋଇ
ଦୁଃଖ ସୁଖ ବସ୍ତାନୀକୁ ଧରି
ସମୟର୍ ନଇ ତାର୍ ଯାଏ ବହି ବହି ।।
ସକାଳର୍ ସୂର୍ଯ୍ୟ ଉଇଁ ଆସେ
ଅସ୍ତ ଯାଏ ଗୋଧୂଳି ବେଳାରେ
ଶୈଶବରେ ଉଏଁ ଯେଉଁ ସୂର୍ଯ୍ୟ
ଅସ୍ତ ଯାଏ ଜରା ବାର୍ଦ୍ଧକ୍ୟରେ ।।
ୁଲତୋଡ଼ା ଭାର୍ ଯଦି
ୁଲଦାନୀ ନ ପାରଇ ସହି
ତଳେ ପଡ଼ି ହୁଏ ଚୂନା ଚୂନା
ବୟସର୍ ୁଲଦାନୀ ଯେବେ
ଜୀବନର୍ ୁଲତୋଡ଼ା ନପାରଇ ସହି
ପ୍ରଥ ପ୍ରାନ୍ତେ ହୁଏ ଆନମନା ।।
ସମୟର୍ ଆଢୁଆଳେ ଦିନରାତି ଚାଲୁଅଛି
ଦୁଃଖସୁଖ ନୁହଁଇ କାହାର୍
ଜୀବନର୍ ବୟସରେ ଅଙ୍କା ବଙ୍କା ଚାଲୁଥିବ
ହସ କାନ୍ଦ ଭରା ଦୁନିଆର୍ ।।

*********



# ଅଦୃଶ୍ୟ ଇଙ୍ଗୀତ

ନିଜ ଭିତରେ ବୁଡ଼ି ରହିଥିବା ମଣିଷଟି
ଖିଆଲିରେ ଭାସିରହିଥାଏ,
ଅନ୍ୟର ଦୁଃଖ ସୁଖ ବୁଝିବାକୁ ତାର
ତିଳେ ହେଲେ ସମୟ ନ ଥାଏ ।୧ ।
ବେଳେ ବେଳେ ରାଗ ଅଭିମାନ ସବୁ
ଠୁଳ ହୋଇ ତିଆରନ୍ତି ବିରାଟ ବଳୟ,
ମନର ଚଞ୍ଚଳ ଗତିରେ ବିବେକର ତାଡ଼ନାରେ
ବଳୟଟି ଟିଯାଏ ହୋଇଣ ଅଥୟ ।୨ ।
ସ୍ନେହ ପ୍ରେମ ମମତାକୁ ଯେଉଁଠାରେ କରେ ଯିଏ ମୂଲ୍ୟ
ସ୍ୱାର୍ଥୀ ଓ ଅବୁଝା ମଣିଷ ପାଖେ
ତ୍ୟାଗର ଯେ ନାହିଁ କିଛି ମୂଲ୍ୟ ।୩ ।
ସବୁଠୁ ନିରାଶ ହୋଇ ବେଳେ ବେଳେ ଅସହାୟ ହୋଇ
କଷ୍ଟ ହୁଏ ଅଶୁମାରୀ ଜୀବନକୁ ଧରି ରଖିବାର ପାଇଁ
ଦୁଃଖ ଆଉ ଅନୁଶୋଚନାର
ସେ ଧୂଆଁରେ ନିତି ମୁଁ କହୁଳେ ।୪ ।
ଅଦୃଶ୍ୟର ଇଙ୍ଗୀତରେ ମନକୁ ବୁଝାଇ
ନିଜକୁ ଶାସନ ମୁଁ କରେ
ଅସହାୟ ହାତ ମୋର ଲମ୍ବିଯାଏ ସେ ଦୂରକୁ ଦୂର
ଫେରିଆସେ ନିରାଶାକୁ ନେଇ
ଭାଙ୍ଗିଯାଏ କେତେ ଆଶା କେତେ ସ୍ୱପ୍ନ
କଳ୍ପନା ଯାଏଟି ଉଭେଇ ।୫।



ଜଳଭାବି ଦେଖେ ଯାଇ ପାଶେ ଖାଲି
ମରୁ ମରିଚିକା ବାଲି ।୬ ।
ତୃଷାତୁରେ କହୁଡ଼ିକୁ ଧରେ ଭ୍ରମେ
ଆଞ୍ଜୁଳାରେ ଭରି
ବେଳେ ବେଳେ ଭାବେ ବସି ଏକାନ୍ତରେ
କାହା ଏପରେ ରାଗ ଅଭିମାନ
ସମସ୍ତେ ନିଜର ମୋର ।୭।
କାହାକୁ କରିବି ପର
ମୁହିଁ ଏକା ଅଲୋଡ଼ା ଜୀବନ । ।
ଏଇ ଘର ଏଇ ଦ୍ୱାର ପଡ଼ିଅଛି
ପଡ଼ିଥିବ ଯୁଗ ଯୁଗ ଧରି
ନିଶ୍ଚିନ୍ତ ମୁଁ ଚାଲିଯିବି ଗନ୍ତ୍ୟବ ପଥରେ
ସମୟଟା ଯାଉଅଛି ସରି ।୮ ।
ତଥାପି ମନରେ ଆସେ ମୋ ଲୋଭ
ମାୟା ମୋହ ଦିଅନ୍ତି ଘେରାଇ,
ଅଦୃଶ୍ୟର ଇଙ୍ଗିତରେ ପାରେ ଯେତେ
ନିତି ନିତି ଦିଏ ମୁଁ ଟାଳାଇ ।୯ ।
ଯେତେବେଳେ ସେମାନଙ୍କୁ ତଡ଼େ ପାଶୁ
ସେତେବେଳେ ନିଅନ୍ତି ଜଡ଼ାଇ,
ଈଶ୍ୱରଙ୍କୁ ଡାକେ ମୁଁ ଆକୁଳେ
ପ୍ରଭୁ ମୋତେ ନିଅ ମୁକୁଳାଇ ।୧୦ ।

*********



# ଅନ୍ତରଙ୍ଗ

ବେଳେ ବେଳେ ଲାଗେ ଏ ଜୀବନ
ତୁଚ୍ଛା ଏକ ମରୁଭୂମି ବାଲି,
ଏ ସଂସାରେ ବଞ୍ଚିବାରେ ନାହିଁ କିଛି ମୂଲ୍ୟ
ଲାଗେ ଯେମନ୍ତେ ଆଜୀବନ କାରାବାସ ପରି ।୧ ।
ବେଳେ ବେଳେ ନିରବ ଓ ନିର୍ଜନ ରାତିରେ
ଭାସି ଆସେ କାହିଁ ଦୂରୁ ନିସ୍ତବ୍ଧର ସ୍ୱର
କାନକୁ ମୋ କରିଦିଏ ସ୍ତବ୍ଧ
କ୍ଲାନ୍ତ ଶ୍ରାନ୍ତ ହୋଇଯାଏ ଏ ମନ ଶରୀର ।୨।
ଭାବି ଭାବି ବିସ୍ମିତ ମୁଁ ହୋଇ
ଅଜଣାତେ ହୁଅଇ ଉଦାସ,
ଅଚାନକ ଲାଗେ ମୋତେ ଧକ୍କା
ଅଦୃଶ୍ୟ ରେ ରହିଅବା କିଏ
କରୁଅଛି ମୋତେ ପରିହାସ ।୩।
କାରୁଣ୍ୟରେ ଅନ୍ତରମୋ ହୋଇଯାଏ ଓଦା
ଛିଡ଼ିଯାଏ ଜୀବନର ଛନ୍ଦ
ମନ ପ୍ରାଣ ହୁଅଇ ଅସ୍ଥିର
ଘୋଟିଯାଏ ପ୍ରତ୍ୟୟ ବିଷାଦ ।୪ ।
ପୁଣି ଏକ ନିସ୍ତବ୍ଧ ନିଶାର୍ଦ୍ଧେ
ଭାସିଆସେ ନିରବର ସ୍ୱର
ଆକାଶ ଓ ପୃଥିବୀକୁ ଭେଦି
ସତେ ଅବା ପାହାଡ଼ରୁ ଝରୁଛି ନିର୍ଝର ।୫ ।



ଅଜଣା ପୁଲକରେ ହୋଇ
ପୁଲକିତ ଝରିଯାଏ ଜୋଛନା ପରାଏ
ନିଶାର୍ଦ୍ଧରେ ଦେଖଇ ସପନ
ଭାସୁଥାଏ ଆଖିଏ ଆଖିଏ ।୭ ।
ଗଗନରେ ଆଶାପ୍ଲୁତ ଆନନ୍ଦର ବର୍ଣ୍ଣବିଭାପରି
ସମୟଟା କାହୁଁଆସି କାହିଁଯାଏ
ମୁଁ ହୁଏ ଚକୋରୀ
ପୁଣି ଏକ ନିର୍ଜନ ଓ ନୀରବ ରାତିରେ
ଅନ୍ତରର ନିଭୃତ କନ୍ଦରୁ ଝରିଆସେ
କବିତା ନିର୍ଝର
ଭେଟିଦିଏ ନିଜକୁ ମୁଁ ନିଜେ
ଶବ୍ଦ ପୁଞ୍ଜ ଗୁନ୍ଥ କରିମାଳ ।୫।
ପୁଣି ଏକ ନିରବ ଓ ନିର୍ଜନ ରାତିରେ
କାହୁଁ ଭାସି ଆସେଏହି ସ୍ୱର
ମୂହୂର୍ତ୍ତକ ପାଇଁ ହେଉପଛେ
ଭୁଲାଏ ସେ ମୋ ମନ ଶରୀର ।୭।
ପଲକରେ ଚାହିଁ ଦେଖେ
ମୋ ଆଖିର ସଡ଼କ ଯେ
ଲମ୍ବିଅଛି ଯୋଜନ ଯୋଜନ
ସୁଖ ଦୁଃଖ ଗତିପଥ ଦେଇ
ଚାଲିଛି ମୋ ଏଭଙ୍ଗା ଜୀବନ ।୭।
ଲାଗେ ମତେ ପଞ୍ଜୁରୀର ପକ୍ଷୀ ପରି
ଏ ସଂସାରେ ହୋଇଅଛି ବନ୍ଦୀ
ନ ଚାହିଁବି ମୋହ ମାୟା ଜାଲେ
ନିତି ହେଉଅଛି ଛନ୍ଦି ।୮ ।

*********



# ସର୍ବଂସହା

ସଂସାରରୁ ସବୁଯାକ ବିଷପିଇ
ନୀଳକଣ୍ଠି ସାଜିପାରେ ନାରୀ
ହେଲେ ବଦଳରେ ପୁରୁଷଠୁ
କିଛି ସୁଖ ଆଶା ଥାଏ କରି ।୧ ।
ନାରୀ ଚାହେଁ ତା ଜୀବନ ପଥଧାରେ
ଠିଆ ହେଉ ଦ୍ରୁମଟିଏ ହୋଇ
ଜାଣତେ ବା ଅଜାଣତେ ସବୁରିକି
ରକ୍ଷାକରୁ ଆଶା ଦେଇ ଦେଇ ।୨ ।
ଚାରିପଟେ ମେଲିଯାଉ ଅଙ୍କା ବଙ୍କା ଶତଶତ
ଛୋଟ ବଡ଼ ଡାଳ
ସେ ଡାଳରେ ଖଞ୍ଜି ହେଉ ମୋତିପରି
ନାନାରଙ୍ଗେ ପତ୍ର, ଫୁଲ, ଫଳ ।୩ ।
ତା ସୌନ୍ଦର୍ଯ୍ୟେ ପ୍ରକୃତି ରାଣୀଟି ଆମ
ହେଉଥାନ୍ତା ଖୁସି
ଆକାଶେ ଥାଇଣ ସ୍ରଷ୍ଟା ସାଥୀବୃନ୍ଦ ସାଙ୍ଗେ
ଧରି ଜାଳନ୍ତେ ଆଶୀଷ ।୪ ।
କିନ୍ତୁ ଏ ସମାଜ କେବେ ହେଲେ
ମନତାର ବୁଝିବାକୁ ଚେଷ୍ଟା କରେ ନାହିଁ ।
ବଦଳରେ ପ୍ରତିବେଳେ ଦିଏ ସେ ଆଘାତ
ସୀମା ଲଙ୍ଘି ପାରେ ନାହିଁ ସହି ।୫ ।



ସହି ବାର୍ ବ୍ଯଞ୍ଜନରେ ଜଳି ଜଳି
ହୃଦୟଟା ଦଗ୍ଧ ହୁଏ ନିତି
ସମାଜକୁ ଦେଖାଇ ଆଲୋକ
ଅନ୍ଧକାରେ ବିନଯାଏ ବିତି ।୭ ।
ଜୀବନକୁ ତିଳ ତିଳ ତ୍ୟାଗୀ ସାଜେ
ଝିଅ ଜାୟା ଭଗ୍ନୀ ଓ ଜନନୀ
ସମୟ ଓ ବୟସର ଅନ୍ତରାଳେ
ଖାଇ ଧକ୍କା ହୁଏ ଅଭିମାନିନୀ ।୭ ।
ତଥାପି ସେ ଦିଏନାହିଁ ଅଭିଶାପ
ବନ୍ଧୁପଛେ ତା ହୃଦସ୍ପନ୍ଦନ
ଶିଖାଜଳି ହୁଏ ତା ପାର୍ବଣ
ଖୋଲେ ନାହିଁ ତା ହୃଦୟମନ ।୮ ।
ସମାଜର ତାଡ଼ନାରେ ଝରିଯାଏ
ତା ଆଖି ଶ୍ରାବଣୀ
ପ୍ରତିରୋଧ କରେ ଯେତେବେଳେ
ପାଇଟେ ସେ ଆଘାତ ବାଘୁଣୀ ।୯ ।
ଜାଳ ଯେତେ ଅପବାଦ ଜଳ
ଲିଭେନି ତା ଜୀବନ ସଳିତା
ଭାଙ୍ଗିଦିଏ ଗର୍ବ ଆଉ ସ୍ବାର୍ଥର ଗାରିମା
ଲଢ଼ି ତାର ସୌମ୍ୟ ନୀରବତା ।୧୦ ।



ଦେଖେ ନିଜ ପ୍ରତିବିମ୍ବ ତା ନିଃସତା
ଶୂନ୍ୟ ମନ ନିସ୍ୱ ଦର୍ପଣରେ
ନ ପାଉ ସହାନୁଭୂତି
କରେ ନା ସେ ହିସାବ ନିକାଶ
ବସି ନିରବରେ ।୧୧।
ଲେଖେ ବସି ଜୀବନର ଗ୍ରନ୍ଥ
ଫର୍ଦ୍ଦ 'ର୍ଦ୍ଦ ସମୟ ପୋଥିରେ
ସୂଚୀପତ୍ର ନଥାଏ ତାହାର
ଲେଖା ହୁଏ କୋହର କାଳିରେ ।୧୨।
ମହାକାଳ ହସୁଛି ଉପରେ
ତଳେ କାନ୍ଦେ ମାଟିର ଦେହଳୀ
ଜୀବନରେ ଆସୁଯେତେ ଆପଦ ବିପଦ
ନିଜକୁ ସେ କରେ ଶକ୍ତିଶାଳୀ ।୧୩।
ଡରେନି ସେ ସମାଜକୁ ଲୋକହସା କରେ ନାହିଁ
କି ଅବା ହିନସ୍ତା
ପ୍ରତିଯୋଗୀ ଭାବେନି ନିଜକୁ
ବନିତାଟି ପାଲଟଇ ଲତା ।୧୪।

*********



# ପ୍ରଶ୍ନ

ପଚାରୁଛି ପ୍ରଶ୍ନ ସ୍ରଷ୍ଟା ହେ ତୁମକୁ
ସୃଷ୍ଟିକି ଧରି ହାତେ
ନିଜେ କରି ସୃଷ୍ଟି କରୁଛ ପ୍ରଳୟ
କଷ୍ଟ ଦିଅ କିମ୍ପା ଏତେ ।୧ ।

କାରିଗର ପରି ଗଢ଼ିଛ ଧରାକୁ
ନିହାଣ ହାତରେ ଧରି
ମୁହୂର୍ତ୍ତକ ମଧ୍ୟେ ଦେଉଅଛ ଭାଙ୍ଗି
ବୋମା ବିସ୍ଫୋରଣ କରି ।୨ ।

ବାତ୍ୟା ବନ୍ୟା ମରୁଡ଼ି ଆସଇ
କରାଳ ମୂରତି ଧରି
ଦୁର୍ବୃତ୍ତ ମାନେ କରନ୍ତିଟି ଫସ
ରକତେ ଖେଳନ୍ତି ହୋରି ।୩ ।

କରନ୍ତି ଆତଙ୍କ ସନ୍ତ୍ରାସବାଦୀ
ଜୀବନୁ ଦଅନ୍ତି ମାରି
ପ୍ରଗତିର ପଥ ହୁଏ ବାଧାପ୍ରାପ୍ତ
ପଛକୁ ଦିଅନ୍ତି ଠେଲି ।୪।

ଆମରି ଦେଶର କବି ଲେଖକଙ୍କୁ
କରେ ମୁହିଁ ନିବେଦନ
କଲମର ଖଣ୍ଡା ଉଠାଅ ହାତରେ
ରଖଏ ଜନ ଜୀବନ ।୫ ।



ବଡ଼ ବଡ଼ୁଆଏ ଐଶ୍ଚର୍ଯ୍ୟ ଭୋଗନ୍ତି
ଲୁଟିଣ ଗରୀବ ଧନ
ହାଆହୁତାଶରେ ବଞ୍ଚୁଥାଏ କିଏ
କିଏ ହରାଏ ଜୀବନ ।୬ ।
ଧଳା କାଗଜରେ ଲେଖି ହୋଇଯାଉ
ଦେଶ ମର୍ମାନ୍ତିକ କଥା,
ଏକ ସ୍ୱର ଧରି ଉଭାହେଲେ ସର୍ବେ
ହରିବ ଦେଶର ବ୍ୟଥା ।୭ ।
ଜାତିଧର୍ମ ବର୍ଣ୍ଣ ବୈଷମରେ ଜଳେ
ଦେଖ ଅଶାନ୍ତିର ନିଆଁ,
ଅସ୍ଥିରତା କୋଣେ ଅନୁକୋଣେ ବ୍ୟାପେ
ବିସ୍ତାରି ତାଣ୍ଡବ କାୟା ।୮ ।
ନିଜ ଆଲୋକରେ କର ଆଲୋକିତ
ପାହୁ ଅମାବାସ୍ୟା ରାତି
ଲେଖନୀ ମୁନରେ ହୋଇ ପୁଲକିତ
ଲଭୁ ଏ ଜନତା ଶାନ୍ତି ।୯ ।
ଅସୁରଙ୍କ ବଂଶ ହୋଇଯାଉ ଧ୍ୱଂସ
ରହୁ ଇତିହାସ ବକ୍ଷେ
ନରନାରାୟଣୀ ନିର୍ଭୟେ ରୁହନ୍ତୁ
ହସି ଧରିତ୍ରୀର କକ୍ଷେ ।୧୦ ।

*********



# କେତୋଟି ମୁହୂର୍ତ୍ତ

ନିରବରେ ବସି ବସି ଆକାଶକୁ ଚାହିଁ ଦେଖେ
 ମୋ ମନର ଭାବନା ଭିତରେ
 ତାରା ମେଳେ ଜହ୍ନ ଯାଏ ଭାସି ଭାସି
 କଳାଧଳା ଚଦରର ମେଘ ଢଙ୍କା ବାଦଲ ଭିତରେ ।୧ ।

ତା ଦେହରୁ ଝରି ପଡେ ଜ୍ୟୋତ୍ସ୍ନା ସବୁ
 ଧରଣୀରେ ଚୂନା ଚୂନା ହୋଇ,
 ନିରବରେ ମୋ ଆଖିରୁ ଝରେ ଲୁହ
 ବ୍ୟଦନାକ୍ତ ଯେତେସବୁ ଚାପିହୋଇଯାଇ ।୨ ।

ଅଚାନକ ଝଡ଼ ଆସେ ଉଡ଼ିଯାଏ
 ଘରଦ୍ୱାର ସଙ୍ଗେ ଗଛପତ୍ର ଲତା
 ଅହେତୁକ ଯନ୍ତ୍ରଣାରେ ମୋ ମନରୁ ଉଡ଼ିଯାଏ
 ସେତ୍ନ ମାୟା ମମତାର ଛଟା ।୩ ।

ହଠାତ ହୃଦୟର କବାଟ ଝରକା ସବୁ
 ଧଡ଼ ଧାଡ଼ ବନ୍ଦ ହୋଇଯାଏ,
 ନିଜେ ନିଜେ ଅଜାଣତେ ଅନ୍ଧାରର ଗହ୍ୱରରେ
 ଚୁପ୍‌ଚାପ୍ ବନ୍ଦୀ ହୋଇଯାଏ ।୪ ।

ଚମକେଇ ବାନ୍ଧି ଦେଲା କିଏ ମତେ
 ଦୁଃଖ ଆଉ ବେଦନାର ସୁଦୃଢ଼ ରଜ୍ଜୁରେ
 କାନ୍ଦିବାକୁ ଚାହିଁଲେବି ପାରେ ନାହିଁ କେବେ କାନ୍ଦି
 ଅମାବାସ୍ୟା ଅନ୍ଧାର ରାତିରେ ।୫ ।



ଧରା ଭିଜେ ଆନନ୍ଦରେ ଶୀତଳତା
ଲୁଚି ଛପି ଜୋସ୍ନା କରରେ
ମୁଁ ଭିଜଇ ନୀରବରେ
ଢ଼ାଳି ଢ଼ାଳି ମୋ ଆଖିର ଲୁହର ଝରରେ ।୭।
ଯା ପାଖରେ ନୁଏଁ ମଥା
ସେ କରଇ ବୁଝାମଣା ମୋ ଭାଗ୍ୟର ବସି,
କାହା ମନେ ନଦେବାକୁ ଦୁଃଖ
ଜର୍ଜରିତ ଯନ୍ତ୍ରଣାରେ ଦିଏ ଟିକେ ହସି ।୭।
ପୂର୍ବଜନ୍ମ କୃତକର୍ମ ଏ ଜନ୍ମ ତପସ୍ୟା 'ଲ
ଭୋଗୁଅଛି ଶାଳଗ୍ରାମ ସାଜି
ଅତୀତର ଯେତେ ସୁଖ
କାଳ ସ୍ରୋତ ଯାଇ ଅଛି ହଜି ।୮।
କେହି ନୁହନ୍ତି ନିଜର କରନ୍ତିଟି ସାତପର
ସ୍ୱାର୍ଥରେ ଥାଆନ୍ତି ସର୍ବେ ମଜ୍ଜି
ତୁମକୁ ଦେଖିଲା କ୍ଷଣି କରନ୍ତି ଟି ଅଭିନୟ
କହୁଥାନ୍ତି କଥା ଗର୍ଜି ଗର୍ଜି ।୯।
ମେଘଶୂନ୍ୟ ଆକାଶରେ
ଜହ୍ନ ସାଙ୍ଗେ ଚାହିଁଅଛି ନିରିହ ନକ୍ଷତ୍ର
ନିଜକୁ ସାନ୍ତ୍ୱନା ଦେଇ ମନକୁ ପ୍ରଶାନ୍ତି କରି
କଟାଇଲି କେତୋଟି ମୁହୂର୍ତ୍ତ ।୧୦।

*********



# ଅଗଷ୍ଟ ପନ୍ଦର

ମୁକ୍ତିର ବାସରେ ଅଗଷ୍ଟପନ୍ଦର
ଘେନ ଆମ ପୁଷ୍ପାଞ୍ଜଳୀ
ଜନଗଣଗାଇ ପତାକା ଉଡ଼ାଇ
ଭାଷଣ ଶପଥ କରି ।୧।
ସ୍ୱାଧୀନ ଭାରତ ହୋଇଅଛି ଦୁଷ୍ଟ
ଦେଖ ହେ ମହାତ୍ମା ସନ୍ଥ
ଅଶ୍ରୁ ଛଳଛଳ ତୃଷିତ ଅଧର
ଦୁର୍ନିତିରେ ଭାରାକ୍ରାନ୍ତ ।୨।
କରିଥିଲ ସତ୍ୟ ହଟାଇବ ଦେଶୁ
ଅଛି ଯେତକ ଅନୀତି
ଜନଗଣ ଦୁଃଖ ବୃକ୍ଷ ଓପାଡ଼ିବ
ହସିବଏ ଦେଶ ଜାତି ।୩।
କର୍ମ କର୍ତ୍ତବ୍ୟର ସମ୍ବିଧାନ ଗଢ଼ି
ସଭିଙ୍କୁ ରଖିବ ବାନ୍ଧି
ରାମ ରାଜ୍ୟ ହେବ ବେକାରୀ ଶ୍ରମିକ
ସଭିଏଁ ରହିବେ ଛନ୍ଦି ।୪।
ନହେବେ ହିନସ୍ତା କନ୍ୟା ମାତା ପିତା
ଯଉତକ ଦେବା ପାଇଁ ,
ସ୍ୱାର୍ଥର କାଳିମା ହଟାଇ ଦେଶୁ
ତ୍ୟାଗ ଆଲୋକ ଜଳାଇ ।୫।
କରି ପରିଶ୍ରମ ହେବେ କାର୍ଯ୍ୟକ୍ଷମ
ହରିବ ଜନତା ଦୁଃଖ,
ଇତିହାସ ବକ୍ଷେ ହୋଇଯିବ ଲେଖା
ଆମରି ଦେଶର ସୁଖ ।୬।



ଆଶା 'ଲବତୀ ନହୋଇପାରିଣ
ରହିଲା କଳ୍ପନା ବୃକ୍ଷେ,
ତୁମ ସାଧୀନତା ଲୋଟୁଅଛି ଆଜି
ସାର୍ଥ ଅନ୍ଧକାର୍ ବକ୍ଷେ ।୭।
ଦେଖ ଆସିଥରେ ତୁମ ସପ୍ନ ନାଆ
ହେଉଅଛ ଟଳମଳ
ଦେଶ ପୁଅ ହାତେ ଶାସନ ଅଖାଲ୍
କାତ ରହୁ ନାହିଁ ସ୍ଥିର୍ ।୮।
ଅନୀତି ଦୁର୍ନୀତି କରିଲେଣି ଖୋଳ
ଶୋଷଣ ପବନେ ଝୁଲେ,
ଆତଙ୍କବାଦୀର୍ ବଡ଼ବାଗ୍ନୀ ଜଳେ
ହିଂସା ତାଣ୍ଡବର୍ ତାଳେ ।୯।
ନିରନ୍ନ ବୁଭୁକ୍ଷୁ କରେ ଆର୍ତ୍ତନାଦ
ଗଗନ ପବନେ କମ୍ପେ,
ଦାଦା ଚାଟୁକାର୍ ଭାଙ୍ଗନ୍ତି ନୟମ
ଅସହାୟା ନିତି ସମ୍ପେ ।୧୦।
ସାର୍ଥୀ ଗନ୍ଧାଘର୍ ବଢ଼େ ଦେଶ ଧନେ
ପଥହରା ପ୍ରିୟଜନ,
କ୍ଷମତା ପ୍ରମତ୍ତ ଆଜିର୍ ଶାସକ
ଭୁଲିଛି ଦେଶ ସାଧୀନ ।୧୧।
ଆଜିର୍ ଏ ଦିନରେ ଡ଼ାକୁଛି ତୁମକୁ
ଆଉଥରେ ଆସ ଟେରି,
ନ ଆଣି ବିରାଗ ନିଅ ହାତ ଧରି
ଆଲୋକ ଦିପାଳୀ ଜାଳି ।୧୨।

*********



# ମନସିନୀ

ମନସିନୀ କୁହନ୍ତି ନାରୀକୁ
ମନ କିନ୍ତୁ ନଥାଏ ତାହାର,
ମଥାଟି ହଲାଏ ସିନା ଏଣୁଅ ପରିକା
ସ୍ୱୀକୃତି ସେ ପାଏନି କାହାର୍ ।୧ ।
ଇଚ୍ଛାମୟୀ ନାଆଁଟି ତାହାର୍
ଇଚ୍ଛା କେବେ ହୁଏ ନାହିଁ ପୂର୍ଣ୍ଣ,
ଇଚ୍ଛା ଯେତେ ବନ୍ଧା ପଡ଼ିଯାଏ,
ସତେ ଅବା କାଟୁଥାଏ ବନ୍ଦୀର୍ ଜୀବନ ।୨ ।
କିର୍ତ୍ତୀମୟୀ ପାଏ ଆଶୀର୍ବାଦ
କିର୍ତ୍ତୀସବୁ ହୁଏ ସନ୍ତାପିତ,
ପୌରୁଷର୍ ପ୍ରଚଣ୍ଡ ତାପରେ
ପୋଡ଼ିଯାଏ ସବୁ ପ୍ରତିଭାତ ।୩ ।
ଦୟାମୟୀ ଡ଼ାକନ୍ତି ଶ୍ରଦ୍ଧାରେ
ଦୟା କିନ୍ତୁ ନିଅନ୍ତି ସମସ୍ତେ,
ଦୟା ଯେବେ ମାଗେ ସେ କାହାକୁ
କରିଯାନ୍ତି ସମସ୍ତେ ନମସ୍ତେ ।୪ ।
କ୍ଷମାମୟୀ କହନ୍ତି ସ୍ନେହରେ
ଦୋଷ କ୍ଷମା କରିଦେ ସଭିଙ୍କୁ,
ପ୍ରତାରଣା ଧୋକା ପାଇବୁ ତୁ
କରୁ ମନ ଯେବେ ପାଇବାକୁ ।୫।
ସହିଷ୍ଣୁତା ଅଟେ ନାରୀମନ୍ତ
ଗୃହାଙ୍ଗନେ ନିତି ଜପୁଥାଏ
ଦୁଃଖାଗ୍ନିରେ ନିତି ଜଳି ଜଳି
ସହିଯାଏ ଧରଣୀ ପରାଏ ।୬ ।



ତାକୁ ଯେତେ କର ହିନିମାନ
କହେ ନାହିଁ ଅଭିମାନ କରେ,
ନାରୀ ତାର ଖୋଜେ ପରିଚୟ
ପୁରୁଷର ସମାଜ ଭିତରେ ।୭ ।
ବାପା ମାଆ ପାଖେ ହୁଏ
ଝିଅ ଭାଇ ପାଖେ ଭଉଣୀ ବୋଲାଇ,
ଶାଶୁଘରେ ବଧୂ ସାଜିଥାଏ,
ସ୍ୱାମୀ ପାଖେ ଧର୍ମପତ୍ନୀ ହୋଇ ।୮।
ପୁଅ ଝିଅଙ୍କର ହୁଏ ମାଆ,
ବୋଲାଏ ପରେ ସେ ଆଈ ଜେଜେମାଆ
ସମ୍ମାନ ତ ଦବା ଦୂରେ ଥାଉ
କେହି ତାକୁ ନ କୁହନ୍ତି ଆହା ।୯।
ସଂସାରରେ ଆନନ୍ଦ ଦେବାକୁ
ତ୍ୟାଗ କରି ହୁଏ ସେ ବାଛନ୍ଦ
ସମାଜରେ ପୁରୁଷହିଁ ଭଲ
ନାରୀମାନେ ଅଟନ୍ତିଟି ମନ୍ଦ ।୧୦।
ପୁରୁଷଟି ହୋଇଲେ ପାହାଡ଼
ନାରୀ ବହେ ହୋଇଣ ଝରଣା
ପୁରୁଷଟି କରେ ରୋଜଗାର
ସ୍ତ୍ରୀ କିନ୍ତୁ ଭରଇ ବରଣା ।୧୧।
ପୁରୁଷଟି କହେ ଅଟେ ବୃକ୍ଷ ନାରୀ ଏକା 'ଲ'ଲ ଦୁଇ । ।
ପୁରୁଷଟି ଦିଗନ୍ତ ଆକାଶ ନାରୀମାନେ ଆଶାପୂର୍ଣ୍ଣ,
ପୁରୁଷଟି ହୋଇଲେ ସମୁଦ୍ର ନାରୀ ହୁଏ ବେଳାଭୂମି । ।
ପୁରୁଷଟି ବୋଲାଇଲେ ଶ୍ରେଷ୍ଠ,
ନାରୀନୁହେଁ ତାହାଠାରୁ କମି । ।

*********



# ଅହଂକାର

ପଥିକଟି ଚାଲୁଥାଏ ଚିନ୍ତାର୍ ସାଗରେ ବୁଡ଼ି
ଲକ୍ଷହୀନ ହୋଇ ଚାଲି ଚାଲି ଥକିଯାଇ
ପଥଧାରେ ପଡ଼େ ବସି ଦେଖି ଗଛ ଛାଇ ।।
'ଗୁଣର୍ ଇଲାକାରେ କୋଇଲି ଗାଉଛି ଗୀତ
ଲୁଚୁ ଲୁଚୁ ଆମ୍ବ ଗଛ ଡ଼ାଳେ
ପବନରେ ଋତୁରାଜ ଝୁଲିଦେଖେ
ଆକାଶର୍ ଚନ୍ଦ୍ରାତପ ତଳେ ।।
ନାଲି ରଙ୍ଗ ହୋଇ ମାଖି
ଅରୁଣ ଆସନ୍ତି ସଖି ଲଭିବାକୁ ସଙ୍ଗ,
ବଉଳର୍ ବାସ୍ନା ନେଇ ମଳୟ ଯାଉଛି ଧାଇଁ
ସବୁଠାରେ ଦବା ପାଇଁ ରଙ୍ଗ ।।
ମନେ ଭରି ଅହଂକାର୍ ବଉଳ କହଇ ଗୀତ
ଭଉଣୀ ଗୋ ଶୁଣ - ବାସ୍ନା ମୋର୍ ଯାଏ ଭାସି
ସମସ୍ତେ କହନ୍ତି ହସି ବଖାଣି ମୋ ପରସ୍ପରେ ଗୁଣ ।।
କୋଇଲି ହୋଇ ଉଦାସୀ ବଉଳର୍ ପାଖେ ଆସି
ଧୈର୍ଯ୍ୟ ସହ କହଇ ଧିରେ
ବଉଳରୁ କଷି ହୋଇ ଆମ୍ବ ରୂପେ ବଡ଼ ହୋଇ
'ଲ 'ଲି ଡାଳରେ ଧରେ ।।



କିଏ ପାଚି ପଡ଼େ ଖସି କିଏ କଞ୍ଚା ପଡ଼େ ଖସି
କିଏ ଅବା ଛିଣ୍ଡାଇ ଧରେ
ଅଦୃଶ୍ୟର ନଗି ଆସି ଅଚାନକ ଦିଏ ଖେଞ୍ଚି
ଲୋଟି ପଡ଼େ ଧରଣୀ ଉପରେ ।।
ମହାକାଳ ହସୁଅଛି ରସିଧରି ଟାଣୁଅଛି
ନଚଉଛି ଦୁନିଆ ସାରା
ନିୟତି ନିୟମ ଏହି ଭାଗ୍ୟେ ଲେଖା ଅଛି
ହୋଇ ତା' ଇଛାରେ ଚାଲିଛି ଧରା ।।
ମନରେ ଆଣି ଗରବ ହରାଅ ନିଜ ଗୌରବ
ଭାବିଛି କି ଅତୀତ କଥା ,
କେତେ ଆସି ଗଲେ କେତେ ହିସାବ ରଖିଛ କେବେ
ଭାବିଲେଟି ଲାଗିବ ବ୍ୟଥା ।।
ପତ୍ରଟିଏ ଖସି ଗଲେ 'ଲଟିଏ ଝଡ଼ି ଗଲେ
ବାଟୋଇଟି ଚାହିଁଣ ରହେ,
ମନରେ ଭରି ଆନନ୍ଦ କୋଇଲିର ଶୁଣେ ଗୀତ
ପଥିକବା କଣ ଚାହେଁ ।।

**********



# ଆଶା ନିରାଶା

କେହି ମୋତେ ଭଲ୍ ପାଅ ବା ନ ପାଅ
ଦୁଃଖେ ନାହିଁ ତିଳେ ମୋର୍
ସନ୍ଦେହର୍ ଘନ କୁହେଳି ଭିତରେ
ଅବିଶ୍ୱାସ କର୍ ପଛେ ମତେ
ମୁହିଁ କିନ୍ତୁ କରିବି ଅପେକ୍ଷା
ବିଶ୍ୱାସର୍ ଘନ କୁହୁଡ଼ିରେ ।୧ ।
ସମୟ କୁ ଡ଼େଇଁ ଡ଼େଇଁ
ମୁହୁର୍ତ୍ତ ମୁହୁର୍ତ୍ତ ଧରି ରଖିଥିବି ଆଶା,
ମୋ ଜୀବନ ଶେଷ ପାହାଚରେ
ତୁମେ ଯଦି ଭାବୁଥିବ ବସି
ସେତେବେଳେ ହୋଇବ ନିରାଶା । ।
ନିର୍ଜନ ରାତିର୍ ବହଳ ଅନ୍ଧକାରରେ
ତୁମକୁ ଚିନ୍ତନ କରି ଆଖିରେ ମୋ
ଟିଉଠେ ମିଳନର୍ ସ୍ୱପ୍ନ,
ପରେ ପରେ ଭାସିଆସେ ଗଛପତ୍ର
ସବୁଜ କେଦାର୍ ସଙ୍ଗେ ନଇପନ୍ଥା
ଆକାଶର୍ ଲୋଭନୀୟ ଜହ୍ନ । ।
ସତେ ଅବା ଛପି ଛପି ଦେହେ ଭିଜେ
ଜ୍ୟୋତ୍ସ୍ନାର୍ ଲାବଣ୍ୟ
ସତେ ଅବା ପାହାଡ଼ର୍ ମଥାନରୁ କୁଳୁକୁଳୁ
ନାଦ କରି ଝରୁଥିବା ଝରଣାର୍ ମୂର୍ଚ୍ଛନାରେ
ମନ ମୋର୍ ପାଲଟଇ ସବୁଜ ଅରଣ୍ୟ । ।



ଭାବେ ଯେବେ ନିଜକୁ ସଜାଇ ତୁମ ମନପାଖେ
ପହଞ୍ଚିବି ଜୀବନର ସରହଦ ଡ଼େଇଁ,
ଅଭିମାନ କରେ ପ୍ରତିବିମ୍ବ ତୁମର ସାମ୍ନା ହେବାକୁ
ଅଭିନୟ କରିପାରେ ନାହିଁ । ।
ତୁମ ମନ ଖୁସି ପାଇଁ ବିଛେଇଲି ଚାରିପଟେ
ସବୁଜ ଘାସର ଗାଲିଚା,
ପକାଇଲି ପ୍ରିତିର ମୁରୁଜ
ଆଉ ପ୍ରେମର କଳସୀ ଥୋଇ
ଫୁଲ ପାଖୁ ମାଗିଥିଲି ସୁଗନ୍ଧିତ ବାସ୍ନା ।
ଆପଣେଇବାର ପ୍ରୟାସ ନେଇ
ଚୂଆ ଚନ୍ଦନ କର୍ପୂର ଥିଲି ଠୁଳ କରି
ଆଲଟ କରିବା ପାଇଁ କହିଥିଲି ମଳୟକୁ,
ତାକୁ କିଏ ନେଲା ଚୋରି କରି ।
ପ୍ରେମ ସିନା ଲାଗେ ମିଠା ଦେଖିବାକୁ
ତୀକ୍ଷ୍ଣ ତରବାରୀ କହିଥିବା କଥା ସବୁ
ମୋ ହୃଦୟ କ୍ଷତକରି ନିମିଷକେ ଆସିଲା ବାହାରି । ।

*********



# ମୃତ୍ୟୁକୁ ମୋ ଭୟ ନାହିଁ

ମୃତ୍ୟୁକୁ ମୋ ନାହିଁ ଭୟ
ତଥାପି ମୁଁ ବଞ୍ଚିବାକୁ ମନ ମୋ ଅଥୟ ।୧।
ମନ କହେ ହୁଅନ୍ତିକି ଦୀପାଳୀର ଲେଲିହାନ ଶିଖା
କିଛି କ୍ଷଣ ଦେଖାଇ
ଆଲୋକ ପାଲଟନ୍ତି ନିରବର ଟୀକା ।୨।
ମନ ହୁଏ ହୁଅନ୍ତିକି ଫୁଲର କଳିକା
ଅନ୍ୟ ମୁଖେ ଫୁଟାଅନ୍ତି ହସ,
ବାସି ହୋଇ ମଉଳିବା ଯାଏଁ
ସମସ୍ତଙ୍କୁ ବାଣ୍ଟନ୍ତି ସୁବାସ ।୩।
ମନ ହୁଏ ହୁଅନ୍ତିକି ନଈ
ସମସ୍ତଙ୍କ ମଇଳାକୁ ଧୋଇ ନିତି ମୁହିଁ ଅରଜନ୍ତି ପୂଣ୍ୟ,
ତୃଷାର୍ତ୍ତକୁ ଜଳଦାନ କରି
ଜୀବନ ମୋ ହୋଇଜାନ୍ତା ଧନ୍ୟ ।୪।
ସମସ୍ତଙ୍କୁ ଦେଖିବାକୁ ସବୁଆଡ଼େ
ବୁଲିବାକୁ ମନ ହୁଏ ମଳୟ ପରିକା,
ସମସ୍ତଙ୍କ ପାଖକୁ ମୁଁ ଯାଇ
ମଳୟର କାଠିକୁ ଛୁଆଁଇ ଖୋଲିଦ୍ୟନ୍ତି
ସମସ୍ତଙ୍କ ଜୀବନ ନାଟିକା ।୫।



ଜୀବନର୍ ବନ୍ଧୁର୍ ରାସ୍ତାରେ
ଚାଲିଅଛି ଯେତେ ନେଣ ଦେଣ,
ମହାକାଳ ପାଞ୍ଜି ବିଡ଼ାଧରି
କରୁଅଛି ମିଶାଣ ଫେଡ଼ାଣ ।୭ ।
ଜୀବନର୍ ସନ୍ଧ୍ୟାବେଳେ ଆସି
ନିଶିଶେଷେ କରେ ନିମନ୍ତ୍ରଣ,
ତୁମ ପାଇଁ ପଠେଇବି ରଥ ସାଙ୍ଗସାଥୀ
ବନ୍ଧୁ ନେଇ ସଙ୍ଗେ ବସିଯିବ ତୁମେ ଜଣ ଜଣ ।୭ ।
ଅସ୍ଥିର୍ ହୁଏ ମୋ ମନ ଚାହେଁ ମୁହିଁ
ଏଣେ ତେଣେ କିଏ ଆସି କହେ
ମୋର୍ କାନେ ଧର୍ ତୁ ଲେଖନୀ,
ଲେଖି ଯାଆ ମନେ ଆସେ ଯାହା
ଗୀତ ଗପ ପୁରାଣ କାହାଣୀ ।୮ ।
ଲେଖିକା କବିଟିଏ ହୋଇ
ଲେଖିଯିବୁ କଳ୍ପନା ବାହାରେ
ଲେଖା ତୋର୍ ହୋଇବ ଅମର,
ଜୀବନ୍ୟାସ ଦେଉଥିବ ନିତି
ଏ ସଂସାରୁ ମରିଗଲା ପରେ ।୯ ।

*********



# ଶୂନ୍ୟତାର୍

ଜୀବନର୍ ଶୂନ୍ୟତାର୍ ଗୀତ ଗାଇ ଗାଇ
ମନ ପକ୍ଷୀ ଉଡ଼ିଯାଏ,
ଆକାଶ ବକ୍ଷରେ ତା ଡ଼େଣା ମେଲାଇ
ତା ସଙ୍ଗୀତ ଶୁଭୁଅଛି କାନେ
କେହି କିଛି ବୁଝି ପାରୁ ନାହିଁ ।।
ବୁଲି ବୁଲି ସବୁରିକି କରି ନିରୀକ୍ଷଣ
ଫେରିଆସେ ସଞ୍ଜ ପହରକୁ,
ରାତ୍ରିର ନିସ୍ତବ୍ଧ ପ୍ରହରେ ଦିନକର
ସୂଚୀପତ୍ର କହେ ସେ ଆତ୍ମାକୁ ।।
ଏ ସଂସାରେ ମୁଖା କେହି ନାହିଁ ଯାହାସବୁ
ଲୋକ ଦେଖାଣିଆ,
ଜୀବନର୍ ରଙ୍ଗ ବଦଳୁଚି
ଭିତରଟା ସବୁ ପାଣିଚିଆ ।।
ଯେଉଁ ଫୁଲେ ନାହିଁ ଗନ୍ଧବାସ
ବାସି ହୋଇ ଥାଏଟି ମଉଳି,
ଦେବତାଙ୍କ ଶିରେ ଲାଗି ନୁହଁ
ଯତନରେ ଦେଲେ ମାଳାକରି ।।



ଜୀବନ୍ତରେ ଦେବ ନାହିଁ ତୁଣ୍ଡେ
ଜଳ ଟୋପେ ଭରି
ମୃତ୍ୟୁ ପରେ ଧନ ରତ୍ନ ଦେବଟି ଅଜାଡ଼ି,
ମଲ୍ଲୀ ଚମ୍ପା କେତକୀର ଢ଼ାଳି ଦେବ ବାସ,
ତେବେ କଣ ଶବ ମୁଖେ ଚହଟିବ ହସ ।।
ଯାହାର ଶରୀରେ ରୋଗ କରିଅଛି ଘର,
ଯନ୍ତ୍ରଣାରେ ଯାଏ ଖଢ଼ି ବ୍ୟଥା ପାରାବାର,
ଥଟ୍ଟା ପରିହାସେ ତାକୁ କର ଆଲିଙ୍ଗନ
ଦେହ ତାର କଣ୍ଟାପରି ଲାଗଇ ସମାନ,
ସ୍ନେହ ପ୍ରେମ ବନ୍ଧନରେ ବାନ୍ଧି ହୋଇ କିଏ,
ତାକୁ ଛାଡ଼ିଦିବା ପାଇଁ ବାଧ୍ୟ ହେଉଥାଏ,
ବିଦାୟ ବେଳାରେ ଗାଅ ମିଳନର ରାଗ
ସମସ୍ତଙ୍କୁ ଛାଡ଼ି ଲୁହ ହେବ ତାର ସାଙ୍ଗ,
ଭଲମନ୍ଦ ସଂସାରରେ ଲୁଚି ଥିଲା ପରି,
ମଣିଷ ଚାଲଇ ଦୁଃଖ ସୁଖକୁ ଆଦରି ,
ଅହଂମିକା ପଣ ଯେବେ ଆସଇ ମନରେ
ଅଚିରେ ହୁଅଇ ଧ୍ୱଂସ କାଳର ସ୍ରୋତରେ ।।

*********



# ରଜ

ସାବିତିରୀ ଗଲା ସାବିତିରୀ ବାଟରେ
ରଜ ଆସୁଅଛି ଚାଲି,
ଆଆଲୋ ବଉଳ ଆସଲୋ ମଙ୍କର
ଯିବା ଆମେ ଦୋଳି ଖେଳି ।୧।
ଦୋଳିରେ ବାନ୍ଧିବା ଫୁଲର ଗଜରା
ଆମ୍ବ ଡ଼ାଳ ଗୋଟି ଗୋଟି,
ଝୁଲାଇଲେ ଦୋଳି ଏପଟୁ ସେପଟ
ଝୁଲୁଥିବ ଛାଟି ଛାଟି ।୨।
ଦୋଳିରେ ବସିଲେ ଶ୍ରୀରାଧା ଶ୍ରୀକୃଷ୍ଣ
ଝୁଲାଅନ୍ତି ଦୁତୀମାନେ,
ଆମେ ସବୁ ସଖୀ ବସିଲେ
ଦୋଳିରେ ଝୁଲାଇବା ଜଣେ ଜଣେ ।୩।
ପୁରୁବ ପରବ ପୂରବ ସଂସ୍କୃତି
ପଡୁନାହିଁ କାର ମନେ,
ବିଦେଶୀ ଫେସନ କପି କରି କରି
ମହାଯାନ ଜଣ ଜଣେ ।୪।
କେତେ ଖୁସିବାସୀ କେତେ ପିଠାପଣା
ଅତୀତେ ଗଲାଣି ଲୁଚି,
କେଏକେ ରୋଓଷ୍ଟ ରୋଓଲ ଭିତରେ
ବର୍ତ୍ତମାନ ଯାଏ ମଚ୍ଚି ।୫।
ବନ୍ଧୁ ପରିଜନ ଚିହ୍ନୁନାହିଁ କେହି



ଯେଉଁ କେତେଜଣ କରନ୍ତି ପାଳନ
ପରମ୍ପରା ରକ୍ଷି ମନେ,
ଆଗାମୀ ଯୁଗରେ ଭୁଲିଯାଅ ସବୁ
କହେ କିଏ ଜାଣେ ଜାଣେ।୭।
ପରିବେଶ ପରିଷ୍କାର କରିବାକୁ
ଗଛ କାଟିଲେ ପଦା,
କିଏ ସେ କାହାକୁ କହିବାକୁ ନାହିଁ
ପରସ୍ପରେ ହୋନ୍ତି ଛଦା ।୮।
ଦୂର ଦୂର ବଢ଼ି କାରଖାନା କଲେ
ପରିବେଶକୁ ଦୂଷିତ,
ଖେଳିବାକୁ ଦୋଳି ଗଛ ଆଉନାହିଁ
ଶୁଭୁନାହିଁ ଆଉ ରଜ ଗୀତ ।୯।
ଋତୁ ପ୍ରକୋପରେ ଚହଲ ବିକଳ
ଆଜି ଏ ଜନ ସମାଜ,
ବୃକ୍ଷ ରୋପଣର ଚାଲେ କାର୍ଯ୍ୟକ୍ରମ
ପଶୁଛି ସବୁରି ହେଜ ।୧୦।
ଗାଆଁ ଗହଳିର ସେ ସୁଖ ଶରଧା
ଆଉ ଆସିବନି ଫେରି,
ପାର୍କକୁ ଯାଇ ବିଦେଶୀ ଖେଳରେ
ମନ ତ ଯାଉଛି ଭରି ।୧୧।



ରଙ୍ଗ ହୋଲି ଗୀତ ଗାଉନାହିଁ
କେହି ଦହି ସରବତ ପିଇ,
କ୍ଲବକୁ ଯାଇ ଡିସ୍କୋ ନାଚନ୍ତି
ବିଦେଶୀ ପାନୀୟ ପିଇ ।୧୨।
ନିଆରା ରୂପରେ ଦେଖାନ୍ତି ସଭିଙ୍କୁ
ନିତି ହୋଇ ସଜବାଜ,
ପ୍ରଚାର କରନ୍ତି ପୂରୁବ ଗୌରବ
ମା ସବୁ ଭୋକଭାକ ।୧୩।
କିଏ ସେ ରଙ୍ଗରେ ହୁଏ ସଜବାଜ
କିଏ ସେ କାନ୍ଦୁଛି ବସି
ବିପଦ ସାଗରେ କେ ଯାଉଛି ବୁଡ଼ି
ଧରିବାକୁ ଖୋଜେ ରସି ।୧୪ ।

•••••••••



# ଆସ ଋତୁରାଜ ଆସ ବସନ୍ତ

ଋତୁ ପରେ ଋତୁ ଅତିକ୍ରମ କରି
ଆସ ଋତୁରାଜ ଆସ ବସନ୍ତ,
'ଳ ପୁଷ୍ପ ସଙ୍ଗେ ଅର୍ଘ୍ୟଥାଳି ଧରି
ଧରଣୀ ତୁମକୁ କରେ ସାଗତ ।୧ ।
ବଉଳ ମାଳାକୁ ଗୁନ୍ଥିଛି ଯତନେ
ପିନ୍ଧାଇବ ତୁମ ଗଳାରେ ନେଇ,
ରସାଳ ଗହ୍ଳେ ପିକ ଗୀତ ଗାଏ
ତା ସରେ ଚମକେ ଆକାଶ ମହୀ ।୨ ।
ବରଷକେ ଥରେ ଆସିଛି ଧରାକୁ
ଖୁସିର ପସରା ଧରିଣ କରେ,
ଗଳି କନ୍ଦି ସାରା ବାଣ୍ଟି ଦେଇ ଯାଅ
ସବୁରି ମୁଖରୁ ହସଟି ଝରେ ।୩ ।
ସହର ବଜାରେ ଧାଡ଼ି ଧାଡ଼ି ହୋଇ
ବସିଅଛି କେତେ ରଙ୍ଗ ଦୋକାନ,
କେତେ ରଙ୍ଗେ 'ଗୁ ହୋଇଅଛି ସଜ୍ଜା
ଆନନ୍ଦେ ନାଚୁଛି ସବୁରି ମନ ।୪ ।
ପତ୍ର ଝଡ଼ାଦେଇ କଅଁଳିଛି ପତ୍ର
ସବୁଜରେ ଗଛ ହୋଇଛି ଘନ,
ବସନ୍ତ ସାଙ୍ଗରେ ଆସିଛି ମଳୟ
ହାତରେ ଧରିଛି ଖୋଲା ପବନ ।୫ ।
ରାଧାକୃଷ୍ଣ ଦୁହେଁ ଯୁଗଳ ମୂରତି
ଖେଳିବେଟି ଦୁହେଁ 'ଗୁର ଖେଳ,
ବସନ୍ତ ଉତ୍ସବେ ମାତିଛନ୍ତି ସର୍ବେ
ବାଜେ ପେଁଏକାଳି ବାଜୁଛି ଢୋଲ ।୬ ।



ବାଜେ ଭେରୀତୁରୀ ବାଜେ ପେଁଏକାଳୀ
ଢୋଲ୍ ସଙ୍ଗେ ବାଜେ ଯୋଡ଼ି ମହୁରୀ,
ତୁମ ଆଗମନେ ଭୁଲିଯାନ୍ତି ସର୍ବେ ପିଲା
ବୁଢ଼ା ଯୁବା ଖେଳନ୍ତି ହୋରି ।୭ ।
'ଗୁ ଖେଳେ ଜାତି ଅଜାତି ନାହିଁ ଗୋ
ପରସ୍ପରେ 'ଗୁ ହୋଇଣ ବୋଳି,
ଆପଣାର ଭାଇ ଭଉଣୀ ପରାଏ
ସ୍ନେହ ପ୍ରେମ ପ୍ରିତି ଉଠେ ଉଚ୍ଛୁଳି ।୮ ।
ଦିଶେ 'ଗୁ ରଙ୍ଗ କେତେ ଭଳି ଭଳି
ନାଲି ହଳଦିଆ ଗୋଲାପି ନେଳି,
ସାମ୍ୟ ଶାନ୍ତି ମୈତ୍ରୀ ବନ୍ଧୁତାକୁ ଧରି
ପ୍ରତିଷ୍ଠିତ ହେଉ ଦେଶ ଆମରି ।୯ ।
ପ୍ରେମ ମୈତ୍ରୀ ଶାନ୍ତି ମମତା ପ୍ରତୀକ
ଆମ ମାଆ ଆମ ଭାରତ ଦେଶ,
ଭିନ୍ନ ରଙ୍ଗ ସିନା ଏକଇ ଉଦ୍ଦେଶ୍ୟ
ହୋଲି ଆସେ ଘେନି ନୂଆ ସନ୍ଦେଶ ।୧୦ ।
ହୋଲି ଖେଳ ଅଟେ ସିନା ପରସ୍ପର ମଧ୍ୟେ
ବାନ୍ଧି ଆଣିବାକୁ ସ୍ନେହ ସଦ୍‌ଭାବ,
ପିଚକାରୀ ସଙ୍ଗେ ଗାଧୋଇ ସଭିଙ୍କୁ
ମନୁ କଳୁଷତା ସେ ଧୋଇଦେବ ।୧୧ ।
ଆହେ ଋତୁରାଜ ଏଧରା ଧାମକୁ
ଆସିଅଛ ଶୂନ୍ୟ ରଥରେ ଚଢ଼ି
ବୈକୁଣ୍ଠ ପରାଏ ସଜାଇ ମର୍ତ୍ତ୍ୟକୁ
ନିଜ ରାଜଗାଦି ଯାଅନି ଛାଡ଼ି ।୧୨ ।

*********



# ଚିଟଉ

ଝିଅ ଲେଖିଅଛି ଚିଟାଉ ମାଆଙ୍କୁ
ଆଦରର୍ ମାଆ ମୋର,
ପାଇଲାଣି ଚିଠି ଅନେକ ଦିନରୁ
ଦେଇ ନାହିଁ ମୁଁ ଉତ୍ତର୍ ।୧ ।
କି ଉତ୍ତର୍ ଦେବି କି କଥା
ଲେଖିବି ବହୁଅଛି ଲୁହଧାର୍
ନିରବ ହୋଇଣ ରହିଛି ମୁଁ
ଏଠି ଛାତିକି କରି ପଥର୍ ।୨ ।
ଟଙ୍କା ଗାଡ଼ି ଦେଲୁ ଟିଭି ଫ୍ରିଜ ଦେଲୁ
ରୋଷେଇ ଜିନିଷ ଓଗେର୍
ଦଶ ଦୋଷ ମୋର୍ ମାଗି ନେଇଥିଲୁ
ଝିଅ ଦେଇ ଜୋଇଁ ହାତର୍ ।୩।
ଗୋଟିଏ ଦୋଷକୁ ନସହିଲେ
ମୋର୍ ଉଠିଗଲା ହାତ ତାଙ୍କର୍,
ହିଂସ୍ରଜନ୍ତୁ ଠାରୁ ବଳନ୍ତି ସଭିଏଁ
ସତେ ଅବା କାଠ ପଥର୍ ।୪।
ଦେଇଥିଲୁ ମତେ ସଂସ୍କାର୍ ଯେତେକ
ଢାଙ୍କିଅଛି ପିଠି ଉପରେ,
ଘର୍ ଇଜତକୁ ଲୁଚେଇ ରଖିଛି
ପ୍ରାଚୁର୍ଯ୍ୟର୍ ପେଢ଼ି ଭିତରେ ।୫।
ମାଟି ଟେଇଲେ ପୋଡ଼ିଦେବେ କହି
ସିଲିଣ୍ଡର୍ ଫାଟିଗଲା,
ନିତି କହୁଛନ୍ତି ବାହାଘର୍ ବେଳେ
ଯଉତକ ବାକି ଥିଲା ।୬।
ନଣନ୍ଦ ମୋହର୍ ବଡ଼ ଅଳିଅଳ
କହୁଥାନ୍ତି ମୋତେ ଛଳି
ଟୁପୁସି ମୁହିଁର୍ ବଙ୍କା କଥାରେ ମୁଁ
ପଡ଼ିଯିବି ଦିନେ ବଳି ।୭ ।



ଦିଅର୍ ମୋହର୍ ଡ୍ୟାନସର୍ ପରି
ଚାଲୁଥିବେ ନାଚି ନାଚି,
କହୁଥିବେ କଥା ସୁରେଇ ସୁରେଇ
ଭଲ୍‌ରେ ପକାନ୍ତି ମାଛି ।୮।
ଶଶୂର୍ ମୋହର୍ ରାଗିଯିବେ ଯଦି
ସାଜିବେଟି ଦିଗମ୍ବର୍
ତାଙ୍କ ଢ଼ଙ୍ଗ ଦେଖି ସମସ୍ତେ ନିରବ
ସତେକି ମୂକ ବଧିର୍ ।୯।
ଶାଶୂଟି ମୋହର୍ ଦୋଳି ଝୁଲୁଥାନ୍ତି
ସଜେଇ ସାଜେଇ ହୋଇ,
ବାସି କାମ ଠାରୁ ସଞ୍ଜ କାମ ଯାଏ
ସବୁ କରୁଥାଏ ମୁହିଁ ।୧୦।
ବାପା ପଚାରିଲେ କହିବୁନି ତାଙ୍କୁ
ମୋ ଦୁଃଖ ଦରଦ କଥା,
ଶୁଣି ଦେବେ ଯଦି ଉଚ୍ଚରକ୍ତ ଚାପ
ଚଢ଼ିଯିବ ତାଙ୍କ ମଥା ।୧୧।
ଭାଇ ଭଉଣୀଙ୍କ ଯତ୍ନ ନେଉଥିବୁ
ମୋ ଠାରୁ ଅଧିକ କରି
ନିଜ କର୍ମ'ଳ ଭୋଗୁଛି ମୁଁ
ଏଠି ପଡ଼ିଛି ଭାଗ୍ୟ ଆଦରି ।୧୨।
ଚାଲୁଛି ଚାଲିବି ତୋ କଥା ଭାବି
ମାନ ଅଭିମାନ ନେଇ
ଢ଼ଲେଁଛି ଏଗୁଣ୍ଡି ଢ଼େଲିବି ଏଗୁଣ୍ଡି ସନମାନ ସଙ୍ଗେ ନେଇ ।୧୩।

*********



# ମହିଳା ଦିବସ

ମହିଳା ଦିବସ ମହିଳା ଦିବସ ପଡୁଛି ଝୁରି,
ପୁରୁବ ଅତୀତ ପୁରୁବ ସ୍ମୃତି ସପନେ ଭରି,
ଅନ୍ତସାର ଶୂନ୍ୟ ହାଡ଼ମାଳର ଏ କଙ୍କାଳ ଦେଖି,
କାନ୍ଦୁଛ ଲଳନା ଛଳନାର ଲୁହ ଆଖିରେ ମାଖି,
ଆଶା ନିରାଶାର ଛାଇ ଆଲୁଅରେ ଉଠ ବିଳପି,
ନିଜ ଦୋଷ ନିଜେ ଦେଖୁନ ପରକୁ ଯାଉଛି ଝଂପି,
କହୁଛ ପ୍ରଗତି କରୁଛ ଦୁର୍ଗତି ବିସ୍ତାରି କାୟା,
ମାନସ ସନ୍ତାନ ଝରାଇଣ ରକ୍ତ ଡାକୁଛି ମାଆ,
ଲୁହ ନୁହେଁ ଲହୁ ବାହାରି ଅସୁଛି ନୟନ କୋଣେ,
ଅକୁହା ସପନ ଖଞ୍ଜି ଉନ୍ମାଦନା ବାହାରେ ରଣେ,
ସାଧନା ସୁରୁଜ ଆଶା ଉଇଁଥଲା ବିଦେଶୀ ଦିଶୁ,
ଆତ୍ମାହୁତି ଦେଇ କରିଲା ଉଦ୍ଧାର ସଂଗ୍ରାମ ଝସୁ,
ନିଜ ଅବୟବ କଲଙ୍କୀତ ହୁଏ ନିଜର ଦୋଷେ,
ଏତେ କର୍ମକଲେ ତଥାପି ପୁରୁଷ ନାରୀକୁ ଶୋଷେ ।
ପୁରୁଷ ନାରୀକୁ କରି ଛିନ୍ନ ଭିନ୍ନ ସପନ ଶେଯେ,
ଭୁଲାଇ ଭାଲେଇ କୋମଳ ନାରୀକୁ ପ୍ରଣୟ ରଚେ ।
ସମାଜେ ପୁରୁଷ ଅପକର୍ମ କରି ପାଉଛି ପୂଜା,
ପ୍ରୀତି ସୁଧା ଦେଇ ରାଧା ନାମେ ବାଜେ କଳଙ୍କ ବାଜା ।
ପବିତ୍ର ଲଳନା ବାରଙ୍ଗନା ସାଜି ହୁଏ ଗଣିକା
ଝୁସ ନିଏ ଲୁଟି ତା ନାମ ସମାଜେ ନାହିଁଟି ଲେଖା,
ପୁରୁଷ ନାରୀକୁ ଗଢ଼ିଅଛି ସ୍ରଷ୍ଟା ସୃଷ୍ଟିକି ଆଣି,
ବଡ଼ ସାନ କରି ଥୋଇଛି ସମାଜ ମନକୁ ଆଣି,
କୁଲି ମଜୁରିଆ ମୁକୁଟ ଧରିକି ହୋଇଛି ରଜା
ନାରୀ ମନ କେବେ ପାରେନାହିଁ ବୁଝି ସମାଜ ରଜା
ମହିଳା ଦିବସେ ଭଉଣୀ ମାନେଗୋ ହୁଅ ଏକାଠି,
ଉଠିବାଟି ତେଜି ସମାଜ ବିରୁଦ୍ଧେ ଧରିଣ ଲାଠି,
ଆସ ମାର୍ଚ୍ଚ ଆଠ ମହିଳା ଦିବସେ ନେବା ଶପଥ,
ମହିଳା ମାନଙ୍କ ଅନ୍ୟାୟ ବିରୁଦ୍ଧେ ଚାଲିବ ରଥ । ।

*********



# ଘର

ଘର ଖାଲି ନୁହଁଇ ସମସ୍ୟା
ସେ ତ ଏକ ସମସ୍ୟାର ଘେର,
କଳା ଧଳା ବାଦଲ ପରାଏ
ଦୁଃଖ ସୁଖ ଘୋଟେ ଜୀବନର ।୧।
ଛୋଟ ଛୋଟ ପିଲାଙ୍କର
ଶୁଣୁଥିବ ଅଳି ଓ ଅର୍ଦ୍ଦଳି,
ତିଳ କଥା ତାଳ ହେଉଥିବ
ବାପା ମାଆ ଦେଉଥିବେ ଗାଳି ।୨।
ନାକ ସୁଁ ସାଁ କରି ଶୁଣୁଥିବ
ସ୍ତ୍ରୀଠାରୁ ନିତି ଯେତେଘର କଥା,
ଦୂରୁଁ ଥିବେ ତୁମ ଠାରୁ ବନ୍ଧୁପରିଜନ
ହଜିଯିବ ତୁମ ନିଜ ଜୀବନର ସତ୍ତା ।୩।
ତୁମ ପଛେ ଲାଗିଥିବେ ଶତ୍ରୁ
ଶୁଣୁଥିବ ନାନାଦି ଗୁଜବ,
ଆଗରେ ସହାନଭୂତିର ଛାୟା,
ଦୟା ପଛେ ହିଂସା ଈର୍ଷା ଥିବ ।୪।
ତେଲ ଲୁଣ ସଂସାର ଭିତରେ
ପ୍ରତିଦିନ ଥିବ ଦେଣ ନେଣ
ଯେତେ ସାଁ କର ପଛେ ତୁମେ,
ମାଛି କିନ୍ତୁ ହେବେ ଭଣ ଭଣ ।୫।
ପୁଅ ଝିଅ ବାହା ବ୍ରତଘର
ମାଥେ ଥିବ ବୋଝର ପାହାଡ଼,
ଭୋଜିଭାତ ସରିଗଲା ପରେ
ପକେଟରେ ଶୁଖା ଖଡ଼ ଖଡ଼ ।୬।
ଘରେ ଥିବ କିଛି ଲୁଗାପଟା
ପିଲାଙ୍କର ବହି ଓ ବସ୍ତାନି,
ବାରମ୍ବାର ଶୁଭୁଥିବ କାନେ
ଟିଭି ଟେପ ଶବ୍ଦ ପ୍ରତିଧ୍ୱନି ।୭।



ଆସବାସ ଥିବ ଅସଜଡ଼ା
ଶୁଭୁଥିବ ଭେଁଏଭାଁଆ ଶବ୍ଦ,
କାନ୍ଥ'ାଚି କରିଥିବ ଆଁଆଁ,
ଝରୁଥିବ ପାଣି ଗଦ ଗଦ ।୮।
କେତେ ରୋଗ ବଇରାଗ ପାଇଁ
ଡାକତର୍ ଔଷଧ ପାଇଁ,
ଯେତେ ତୁମେ କର୍ ରୋଜଗାର୍
ଉଡ଼ିଯିବ ସବୁ ସାଇଁ ସାଇଁ ।୯।
ପିଲାଙ୍କର୍ ପାଠପଢ଼ା ିସ
ବହି ଖାତା କାଗଜ କଲମ,
ଯୋଗାଇଣ ନ ପାରିଲ୍ ଯଦି
ପିଲା ତୁମକୁ ମାରିବେ ମଲମ ।୧୦।
ମୁଣ୍ଡ ଝାଳ ତୁଣ୍ଡେ ମାରି ମାରି
ଗଢ଼ିଥିବ ଦୁଃଖେ ଯେଉଁ ଘର୍
ଯିଏ ଯେତେ କରୁଥିବେ ଦୋଷ,
ଲଦିଦେବେ ମାଥେରେ ତୁମର୍ ।୧୧।
ଘାଣ୍ଟିହେବ ସମସ୍ତଙ୍କ ପାଇଁ
ତୁମ ପାଇଁ ନ ଥିବଟି କେହି,
ଯେଝା କାମ ସରିଗଲା ପରେ
ଚାଲିଯିବେ ତୁମକୁ ନକହି ।୧୨।
ଆପଣାର୍ ଥିବ ଯେଉଁ ଘର୍ ଦିନେ ତାକୁ ଯିବ ଛାଡ଼ି ଦେଇ,
ଆଖି ଲୁହ ଢାଳିଦେଇ ଟିକେ କହୁଥିବେ ଭୁଲିଯିବା ପାଇଁ ।୧୩।

*********



# କବିଟିଏ ହେବି

ଭାବୁଥିଲା ମନ କବିଟିଏ ହେବି,
କବିତା ଲେଖିବି ବସି
ଭାବୁଥିଲି ବସି କେଉଁଠୁ ଲେଖିବି,
କିଏସେ କହିଲା ଆସି ।
ମଣିଷ ଜନମି ମରିଗଲା ପରେ,
କେଉଁଠାକୁ ଯାଏ ଚାଲି,
ଥାଏକି ସେଠାରେ ଚକମକି ଘର,
ଜଳୁଥାଏ ବତୀ ନାଲି ।
ଦେଖେକି ସେଠାରେ ପାହାଡ଼ ପର୍ବତ,
ବିଲବଣ ନାଳ ନଈ,
ଉଡ଼ନ୍ତି ସେଠାରେ ଦଳଦଳ ପକ୍ଷୀ,
ନାନାଜାତି ଗୀତ ଗାଇ ।
ଫୁଟେ କି ସେଠାରେ ବଗିଚା ଭିତରେ,
ବିଭିନ୍ନ ଜାତିର ଫୁଲ,
ବାସ୍ନା ନେଉଥାଏ ମଳୟ ଚୋରାଇ,
ଭଅଁର ମାଳକୁ ମାଳ ।
ଥିବେ ସାଙ୍ଗସାଥୀ ବନ୍ଧୁ ପରିଜନ,
ଈର୍ଷାଳୁ ପଡ଼ୋଶୀମାନେ,
ସମୁଦ୍ରବେଳାରେ ଗାଉଥିବ ଗୀତ,
ଲହଡ଼ି ମଧୁର ସ୍ୱନେ ।



ଜ୍ୟୋତ୍ସ୍ନା ପରଶରେ ହସୁଥିବ କଇଁ,
ଭାନୁକୁ ଦେଖି ପଦ୍ମଜା,
ନିଶୀଥ ବେଳାରେ ବାଜୁଥିବ ବୀଣା,
ଗଭୀରତମ ଆତ୍ମଜା ।
କାମ କରୁଥାନ୍ତି ସକାଳରୁ ସଞ୍ଜ,
ବୁଢ଼ାଠାରୁ ଯେତେ ପିଲା,
ଗୋଧୂଳି ବେଳାରେ ଗୋଠରୁ ଫେରନ୍ତି,
ଗାଇ ଗାଈଆଳ ପିଲା ।
ଆତ୍ମାର ଉଆସ ନାଚୁଥିବା ଦେଖି,
ହସୁଥିଲାଟି ସମୟ,
ଶୁଭୁଥିଲା କାନେ କହେ ଅନ୍ତରୀକ୍ଷେ,
ମହାକାଳଙ୍କର ଜୟ ।
ଅନନ୍ତକାଳ ଯେ ବ୍ୟାପିଛି ଏପରି,
ଦିବା ଚନ୍ଦ୍ରାଲୋକ ପରି,
ଘୁମେଇ ପଡ଼େକି ଚିରନ୍ତନୀ କେବେ,
ନିଶୀଥ କନିଆଁ ପରି ।
ସେ ମହାନାୟକ ବଳୟ ଭିତରୁ,
ଫେରିତେ ଆସିଲି ଫେରି,
ଚାହିଁଲି ଚକିତେ କଲମ ମୁନରୁ,
ଶବଦ ଆସୁଛି ଝରି ।

*********

# ପ୍ରକାଶକଙ୍କ କଲମରୁ...



ବରିଷ୍ଠ କବି ଶ୍ରୀମତି ସ୍ନେହମୟୀ ଦାଶ ଜଣେ ଦରଦୀ କବି । ସାହିତ୍ୟ ପ୍ରତି ରୁଚି ରଖିଥିବା ଶ୍ରୀମତୀ ଦାଶ ଜଣେ ସୁଗୃହିଣୀ ହେଲେ ମଧ୍ୟ ସାହିତ୍ୟ ତାଙ୍କର ଆତ୍ମା । ଅନେକ ପତ୍ରପତ୍ରିକାରେ ତାଙ୍କର ଗପକବିତା ଏବଂ ଶିଶୁଲେଖା ପ୍ରଭୃତି ପ୍ରକାଶିତ । ଗୋଟିଏ ଉପନ୍ୟାସ, ଗୋଟିଏ କବିତା ସଂକଳନ ଏବଂ ଗୋଟିଏ ଶିଶୁ କବିତା ସଂକଳନ ତାଙ୍କର ପ୍ରକାଶ ପାଇ ପାଠକୀୟ ଆଦୃତି ଲାଭ କରିଛି । ଅନେକ ଅନୁଷ୍ଠାନ ତରଫରୁ ସାହିତ୍ୟ ପାଇଁ ସେ ସମ୍ମାନୀତ ମଧ୍ୟ ହୋଇଛନ୍ତି ।

ସରଳ, ସାବଲୀଳ ଏବଂ କୌଣସି ବିଷୟକୁ ଅନୁଧ୍ୟାନ କରି ଆମୂଳଚୂଳ ତାକୁ ଛନ୍ଦ କବିତା ମାଧ୍ୟମରେ ଲେଖିବା ତାଙ୍କ ଲେଖକୀୟ ଚାତୁରୀ । ଜୀବନ, ସମାଜ, ସଂସାର, ସମ୍ମାନ ଆଉ ସଂସ୍କାରକୁ ଖୁବ୍ ଭଲପାଉଥିବା କବିଙ୍କର କବିତା ବହି "ଜୀବନ ସଙ୍ଗୀତ" ସବୁ ପାଠକଙ୍କ ମନକୁ ଛୁଇଁବ ବୋଲି ଆଶା ।

ପ୍ରକାଶିକା
ବାସନ୍ତୀ ଦାସ